# କ୍ରିୟାଯୋଗ
# ଓ
# ସ୍ୱାମୀ ହରିହରାନନ୍ଦ



ଡକ୍ଟର ପ୍ରଜ୍ଞାନନ୍ଦ ନାୟକ

# କ୍ରିୟାଯୋଗ
# ଓ
# ସ୍ୱାମୀ ହରିହରାନନ୍ଦ

: ରଚନା :

ଡକ୍ଟର ରାଘବାନନ୍ଦ ନାୟକ

ଏମ୍. ଏ (ବିଶ୍ୱଭାରତୀ), ଡି. ଲିଟ୍ ( ଉତ୍କଳ )



: ପ୍ରକାଶକ :

କ୍ରିୟାଯୋଗ 'ଧ୍ୟାନ କେନ୍ଦ୍ର'

ସମ୍ବଲପୁର

# KRIYAYOGA
# O
# SWAMI HARIHARANANDA

By
Dr. Raghabananda Nayak

Published by

KRIYAYOGA MEDITATION
CENTRE, SAMBALPUR

First Published on
5 th, January, 1988

Printed at
The Quality Printers, Sambalpur

**Price - Rupees Ten only**

ମୂଲ୍ୟ - ଦଶ ଟଙ୍କା ମାତ୍ର

# ଶୁଭାସ୍ତୁ ଭବତୁ

କଲ୍ୟାଣର ପ୍ରତିମୂର୍ତ୍ତି ଗୁରୁଦେବ ସ୍ୱାମୀ ହରିହରାନନ୍ଦ ଗିରି ମହାରାଜଙ୍କ ଅସୀମ କରୁଣାରୁ ଏହି କ୍ଷୁଦ୍ର ଗ୍ରନ୍ଥଟି ପ୍ରକାଶ ପାଇଲା । ବିଜ୍ଞାନ ଭିତ୍ତିକ କ୍ରିୟାଯୋଗ ମାନବ ଜାତି ପାଇଁ ସର୍ବଶ୍ରେଷ୍ଠ ମହୌଷଧି ଓ ସର୍ବରୋଗହାରୀ ସୁଖକର ପ୍ରକ୍ରିୟା । ଏହା ଶରୀର, ମନ, ବୁଦ୍ଧି ଓ ଆଧ୍ୟାତ୍ମିକ ବିକାଶ ପାଇଁ, ମଣିଷର ଉତ୍‌ଥାନ ଓ ବିବର୍ତ୍ତନ ପାଇଁ, ମାନବିକ ସଂସାରର ସମୂଳ ପରିବର୍ତ୍ତନ ପାଇଁ ପ୍ରାଚୀନ ଋଷିପ୍ରଦତ୍ତ ଯୋଗ ବିଜ୍ଞାନ । ଗୁରୁଦେବ ଏହି ସାଧନା ଧାରାର ସର୍ବଶ୍ରେଷ୍ଠ ପ୍ରତିନିଧି । ତାଙ୍କୁ ଆଜି ଅଶୀ ବର୍ଷ ପୂର୍ତ୍ତି ହୋଇଥିଲେ ମଧ୍ୟ ଦୀର୍ଘ ଅର୍ଦ୍ଧ ଶତାବ୍ଦୀଧରି ମାନବ ଜାତିର କଲ୍ୟାଣ ନିମନ୍ତେ ସେ ଅକ୍ଲାନ୍ତ ପ୍ରୟାସ କରି ଆସୁଛନ୍ତି । ମୁଁ ଜଣେ ଗୃହୀ ହେଲେ ମଧ୍ୟ ତାଙ୍କର ଏହି ମହାନ ସାଧନାକୁ ବିଶ୍ୱରେ ପରିବେଷଣର ଗୁରୁ ଦାୟିତ୍ୱ ସେ ମୋ ଉପରେ ଅର୍ପଣ କରିଛନ୍ତି । ଏହା ମୋର ପରମ ସୌଭାଗ୍ୟ ଓ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ତାଙ୍କର କର୍ମ ସେ କରିବେ – ମୁଁ କେବଳ ତାଙ୍କର ଏକ ଅଂଶ ବିଶେଷ ମାତ୍ର । ତାଙ୍କରି ପ୍ରେରିତ କ୍ରିୟାଯୋଗ ପ୍ରସାରଣ ପ୍ରକଳ୍ପର ଏହାହିଁ ଅୟମାରମ୍ଭ ।

ଗୁରୁଦେବଙ୍କ ପରିପୂର୍ଣ୍ଣ ଜୀବନ ଲେଖାଗଲେ ଏହା ପରମହଂସ ଯୋଗାନନ୍ଦଙ୍କ 'ଯୋଗୀ ଜୀବନ କଥା' ଭଳି ବିଶ୍ୱବିଶ୍ରୁତ ରଚନା ହୋଇପାରନ୍ତା । ଏହି କ୍ଷୁଦ୍ର ପୁସ୍ତକରେ ଏହି ପୁରୁଷୋତ୍ତମ ମହାମାନବଙ୍କର ସଂକ୍ଷିପ୍ତ ଜୀବନଧାରା ଓ କ୍ରିୟାଯୋଗ ପରମ୍ପରାରେ ତାଙ୍କର ଅବଦାନ ସଂପର୍କରେ ଆଲୋଚନା କରାଯାଇଛି । ମୋର ବିଶ୍ୱାସ ଏହା ପଢି ବହୁଲୋକ ପ୍ରେରଣା ପାଇବେ । ଭଗବଦ୍ ଶକ୍ତିବଳରେ କ୍ରିୟାଯୋଗ ଦିନେ ବିଶ୍ୱପ୍ରସାରୀ ହେବ । ଏହାହିଁ କ୍ରିୟାଯୋଗୀ, ମହାମୁନୀ ବାବାଜୀ ମହାରାଜଙ୍କର ମାନବ ଜାତି ପାଇଁ ପରମ ଆଶୀର୍ବାଦ ।

ଏହି ଗ୍ରନ୍ଥ ପ୍ରକାଶନରେ ଷେତରଜପୁର କ୍ରିୟାବାନ୍ ଶ୍ରୀ ଲକ୍ଷ୍ମୀ ନାରାୟଣ ଅଗ୍ରୱାଲ ଓ ଶ୍ରୀରାମଲଲ ଅଗ୍ରୱାଲ ଗଭୀର ଶ୍ରଦ୍ଧା ସହକାରେ ଆବଶ୍ୟକୀୟ ଅର୍ଥ ଦାନ କରିଛନ୍ତି । ଏହା ତାଙ୍କର ଉଦାରତା ଓ ତ୍ୟାଗର ନିଦର୍ଶନ ମାତ୍ର । କ୍ରିୟାବାନଗଣଙ୍କୁ ଏହି ମହାନ୍ ଧାରାକୁ ଯତ୍ନ ସହକାରେ ରକ୍ଷା କରିବାକୁ ପଡ଼ିବ । ଏହା ହେବ ମାନବ ଜାତି ପାଇଁ ମଙ୍ଗଳକର । ସ୍ଥିର କରାଯାଇଛି, ଏହି ଗ୍ରନ୍ଥର ବିକ୍ରୟଲବ୍ଧ ଅର୍ଥ କ୍ରିୟାଯୋଗର ପ୍ରସାର ପାଇଁ ବିନି-ଯୋଗ କରାଯିବ । ସମ୍ବଲପୁର, ବୁର୍ଲା ଓ ବନାବିରା ଧ୍ୟାନକେନ୍ଦ୍ରର ସାଧକ ଗଣ ଯେଉଁ ବିପୁଳ ଆଗ୍ରହ ସହକାରେ ସାଧନା ପ୍ରସାର ପାଇଁ ସଂକଳ୍ପ ବଦ୍ଧ, ବିଶ୍ୱାସ ହେଉଛି କ୍ରିୟାଯୋଗ ସମ୍ବଲପୁର ତଥା ଓଡ଼ିଶାରେ ସଂପ୍ରସାରିତ ହେବ । ଏହି ଗ୍ରନ୍ଥ ରଚନା ପଟ୍ଟଭୂମିରେ ଯେଉଁମାନଙ୍କ ଶୁଭେଚ୍ଛା ଅଛି— ସେମାନଙ୍କ ମଧ୍ୟରେ ଶ୍ରୀ ଲକ୍ଷ୍ମୀନାରାୟଣ ଅଗ୍ରୱାଲ, ଶ୍ରୀ ଗତିକୃଷ୍ଣ ତ୍ରିପାଠୀ, ଶ୍ରୀ ପ୍ରକୃତି ରଞ୍ଜନ ମୁଖାର୍ଜୀ ଓ ଶ୍ରୀ ରାମଚନ୍ଦ୍ର ରାଉତଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । ସମସ୍ତଙ୍କର ମଙ୍ଗଳ ହେଉ ।

ବହୁ ସାବଧାନତା ସତ୍ତ୍ୱେ କିଛି ମୁଦ୍ରଣ ଦୋଷ ରହିଯାଇଛି । ପରବର୍ତ୍ତୀ ସଂସ୍କରଣରେ ତାହା ଦୂର କରିବା ସମ୍ଭବ ହେବ । ସେଥିପାଇଁ କ୍ଷମା ପ୍ରାର୍ଥନା କରୁଛି ।

ରାଘବାନନ୍ଦ

ଜାନୁଆରୀ, ୫ ତାରିଖ, ୧୯୮୮,

ପରମହଂସ ଯୋଗାନନ୍ଦ ଜନ୍ମଦିବସ ।

**ଯୋଗାଯୋଗ:—**

**ଡକ୍ଟର ରାଘବାନନ୍ଦ ନାୟକ,**

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ,

ଗଙ୍ଗାଧର ମେହେର ମହାବିଦ୍ୟାଳୟ,

ସମ୍ବଲପୁର—୭୬୮୦୦୪;



# ସୂଚୀପତ୍ର

ବିଷୟ | | ପୃଷ୍ଠା

# କ୍ରିୟାଯୋଗ ପରମ୍ପରା ଓ ସ୍ୱାମୀ ହରିହରାନନ୍ଦ

ପ୍ରାଚୀନ କାଳରୁ ଯୋଗ ଶବ୍ଦ ଭାରତରେ ପ୍ରଚଳିତ ହୋଇ ଆସୁଛି ସଂସ୍କୃତ ଶବ୍ଦ 'ଯୁଜ୍' ର ଅର୍ଥ ହେଉଛି ଯୁକ୍ତ ବା ମିଳିତ ହେବା । ଭାରତୀୟ ଦର୍ଶନରେ ଏହାର ଅର୍ଥ ଜୀବ ଓ ଆତ୍ମାର ମିଳନ । ଏହି ମିଳନ ପ୍ରକ୍ରିୟା ଧ୍ୟାନଦ୍ୱାରା ସମ୍ଭବ ହୁଏ । ଭାରତରେ ଯୋଗ ପରମ୍ପରା ଓ ସାଧନା ଏତେ ପ୍ରାଚୀନ ଯେ ବହୁ ସାଧକ ଯୁଗ ଯୁଗ ଧରି ଏ ସଂପର୍କରେ ଗଭୀର ଅନୁଧ୍ୟାନ କରି ଆସିଛନ୍ତି । ଫଳରେ ବହୁ ମତ ଓ ପଥର ସୃଷ୍ଟି ହୋଇଛି । ମାତ୍ର ଏମାନଙ୍କ ମଧ୍ୟରେ ଗୀତାର ଅଷ୍ଟାଦଶ ଯୋଗ ଓ ପତଂଜ୍ଜଳିଙ୍କ ଅଷ୍ଟାଙ୍ଗ ଯୋଗ ସାଧନା ବିଶେଷ ପ୍ରସିଦ୍ଧି ଲାଭ କରିଛି ।

ଯୋଗ ଏକ ବୈଜ୍ଞାନିକ ପଦ୍ଧତିରେ ଦୈହିକ ତଥା ମାନସିକ ସାଧନା । ତେଣୁ ତାହାର ଗବେଷଣା ଓ ବିକାଶ ଯୁଗ ପରିବର୍ତ୍ତନରେ ହେବା ସ୍ୱାଭାବିକ । ମଣିଷ ଚାହେଁ ସୁଖ, ଶାନ୍ତି, ଧନ, ସମ୍ପଦ ଓ ମୃତ୍ୟୁ ପର୍ଯ୍ୟନ୍ତ ସୁସ୍ଥତା ଓ ସ୍ୱାଛନ୍ଦ୍ୟ । ଏହି ଚିରନ୍ତନ ଆକାଂକ୍ଷା ବ୍ୟତୀତ ସେ ଚାହେଁ ଜୀବନ ଓ ମୃତ୍ୟୁ ରହସ୍ୟର ସମାଧାନ । ମଣିଷ ଚାହେଁ ପରିପୂର୍ଣ୍ଣତା । ଏହା ପୂର୍ଣ୍ଣ କରିବା ପାଇଁ ସେ ସାରାଜୀବନ ପ୍ରୟାସ କରିଥାଏ । ପ୍ରୟାସ ପାଇଁ ପ୍ରଥମ ଆବଶ୍ୟକତା ହେଉଛି ଜୀବନର ଲକ୍ଷ୍ୟ ଓ ଆଦର୍ଶ ସଂପର୍କରେ

ସଚେତନ ହେବା । ପ୍ରତ୍ୟେକ ବ୍ୟକ୍ତିର କାମନା ଓ ବାସନା ଦୃଷ୍ଟିରୁ ଲକ୍ଷ୍ୟରେ ଭିନ୍ନତା ପରିଲକ୍ଷିତ ହୁଏ । କିନ୍ତୁ ପ୍ରତ୍ୟେକ ମଣିଷର ଏକ ପରମ ଓ ସାଧାରଣ ଲକ୍ଷ୍ୟ ଅଛି । ଏହା ଜୀବନ ମରଣର ସୀମା ମଧ୍ୟରେ ଛଳ ଛଳ କରୁଥିବା ଜୀବନ ଧାରର ଗତିବେଗକୁ ଅଜ୍ଞାତରେ ହେଉ ବା ଜ୍ଞାତସାରରେ ହେଉ ସଞ୍ଚାଳିତ କରୁଥାଏ ।

ଆତ୍ମଜ୍ଞାନ ବା ନିଜକୁ ଜାଣିବା ହେଉଛି ମାନବ ଜୀବନର ପରମ ଲକ୍ଷ୍ୟ ବା ଶ୍ରେଷ୍ଠ ଅଭୀପ୍ସା । ଆମେ ଯେଉଁଠୁ ଆସିଛୁଁ ସେଠାକୁ ପୁଣି ଫେରିଯିବାକୁ ହେବ । ମଣିଷ ଆସିଛି ଭଗବାନଙ୍କଠାରୁ ଏହାତ ସକଳ ଶାସ୍ତ୍ରର ସିଦ୍ଧାନ୍ତ । ଗୀତାରେ ଭଗବାନ କହିଛନ୍ତି– "ମୋର ଅଂଶ ଜୀବ-ଲୋକରେ ସନାତନ ଜୀବରୂପ ହୋଇଛି ।" ଏହି ଜୀବ କିନ୍ତୁ ନିଜର ସ୍ୱରୂପ ଭୁଲି ଦେହକୁ ଆତ୍ମା ବୋଲି ଭୁଲ କରି ମାୟା ମୋହ ଭ୍ରାନ୍ତିରେ ପଡ଼ୁଛି । ଏହି ପ୍ରକୃତି ମଧ୍ୟରେ ବ୍ରହ୍ମାଣ୍ଡ ବା ଆତ୍ମାର ଅବସ୍ଥାନ ଥିବା ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଓ ଗମନାଗମନର ଅନ୍ତ ନାହିଁ ।

ପ୍ରତ୍ୟେକ ମଣିଷ ମଧ୍ୟରେ ଯେଉଁ 'ମୁଁ' ବିରାଜିତ, ତାହାକୁ ଆଧ୍ୟାତ୍ମିକ ଭାଷାରେ କୁହାଯାଏ ଆତ୍ମା । ଏହି ଖଣ୍ଡ ଜୀବାତ୍ମାହିଁ ଈଶ୍ୱର-ଙ୍କର ପ୍ରକାଶ – ସେ ହିଁ ଅନ୍ତର୍ଯ୍ୟାମୀ ପ୍ରାଣସ୍ୱରୂପ ଭଗବାନ । "ଗୀତା ରହସ୍ୟ"ରେ କୁହାଯାଇଛି–

'ଆତ୍ମା କ୍ଷେତ୍ରଜ୍ଞ ଇତ୍ୟୁକ୍ତ ସଂଯୁକ୍ତ ପ୍ରାକୃତୈର୍ଗୁଣୈଃ ।
ତୈରେବ ତୁ ବିନିର୍ମୁକ୍ତ ପରମାତ୍ମେ ତ୍ୟୁଦାହୃତମ୍' ।

ଗୀତାରେ ଶରୀରକୁ କ୍ଷେତ୍ର ବୋଲି କୁହାଯାଇଛି । ପ୍ରାଣରୂପୀ ଆତ୍ମା-ରୂପରେ ଶରୀର ମଧ୍ୟରେ ଅବସ୍ଥିତ ରହି ଯେ ଦେହର ସମସ୍ତ ତତ୍ତ୍ୱ ବିଦିତ ହୁଅନ୍ତି, ତାହାଙ୍କୁ ଅନ୍ତର୍ଯାମୀ ପୁରୁଷ କ୍ଷେତ୍ରଜ୍ଞ ବୋଲି କୁହାଯାଏ । ଜୀବାତ୍ମା ତ୍ରିଗୁଣରୁ ମୁକ୍ତ ହୋଇଗଲେ ଆତ୍ମା ବା ପରମାତ୍ମା ବୋଲି ଅଭିହିତ ହୁଏ । ନିଜକୁ ଜାଣିଲେ ନିଜ ମଧ୍ୟରେ ଥିବା ଅନ୍ତର୍ଯାମୀ ଆତ୍ମାକୁ ଜାଣିଲେ ସମସ୍ତ ଆକାଂକ୍ଷାର ପୂର୍ଣ୍ଣତା ପ୍ରାପ୍ତି ହୁଏ । ଜୀବନ ପରିପୂର୍ଣ୍ଣ ହୁଏ । ଯୋଗ ସାଧନା ଦ୍ୱାରା ଏହିପରି ପୂର୍ଣ୍ଣତା ଲାଭ ହୁଏ । ଜୀବଶରୀର ବା ଦେହ, ମନ, ପ୍ରାଣକୁ ଆତ୍ମାଭିମୁଖୀ କରିବା ବା ଈଶ୍ୱର ପ୍ରଣିଧାନ କରିବା ହେଉଛି ଯୋଗର ଶ୍ରେଷ୍ଠ ସଂଜ୍ଞା ।

ଭଗବଦଗୀତା ତୃତୀୟ ଅଧ୍ୟାୟ ୪୨ ଶ୍ଳୋକରେ ଅଛି–

"ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ ।
ମନସସ୍ତୁ ପରା ବୁଦ୍ଧି ର୍ଯୋ ବୁଦ୍ଧେଃ ପରତସ୍ତୁ ସଃ ।"

ଇନ୍ଦ୍ରିୟଗଣ ଦେହାଦି ଅପେକ୍ଷା ଶ୍ରେଷ୍ଠ, ଇନ୍ଦ୍ରିୟ ହୀନ ଅବସ୍ଥାରେ ଶବ-ଦେହରେ କୌଣସି କ୍ଷମତା ନଥାଏ । ଇନ୍ଦ୍ରିୟ ଅପେକ୍ଷା ମନଶ୍ରେଷ୍ଠ ମନଦ୍ୱାରାହିଁ ଇନ୍ଦ୍ରିୟର କାର୍ଯ୍ୟ ଅନୁଭୂତ ହୋଇଥାଏ, ମନର ସଂଯୋଗ ଦ୍ୱାରାହିଁ ଇନ୍ଦ୍ରିୟର କାର୍ଯ୍ୟ ହୋଇଥାଏ । ପୁଣ ମନ ଅପେକ୍ଷା ବୁଦ୍ଧି ଶ୍ରେଷ୍ଠ, କାରଣ ବୁଦ୍ଧିଦ୍ୱାରା ଭଲମନ୍ଦର ଜ୍ଞାନ ଜଣାଯାଏ, ବିଗ୍ରହ ବୁଦ୍ଧିଦ୍ୱାରା ହିଁ ହୋଇଥାଏ । ଆତ୍ମା ହିଁ ବୁଦ୍ଧିଠାରୁ ଶ୍ରେଷ୍ଠ । କାରଣ ଏହି ପ୍ରାଣରୂପୀ ଆତ୍ମା ଯେତେ ସମୟ ପର୍ଯ୍ୟନ୍ତ ଦେହରେ ଥାଆନ୍ତି ସେ ପର୍ଯ୍ୟନ୍ତ ମନ, ବୁଦ୍ଧି, ଇନ୍ଦ୍ରିୟଗଣ କାର୍ଯ୍ୟ କରୁଥାନ୍ତି । ପ୍ରାଣରୂପୀ ଆତ୍ମାରୁ ହିଁ ମନ

ପ୍ରକୃତିର ଉତ୍ପତ୍ତି ହୋଇଛି ବୋଲି ଯୋଗୀଗଣ ମତ ଦିଅନ୍ତି । ସ୍ଥିର ପ୍ରାଣରୂପ ଆତ୍ମା ସ୍ୱରୂପ ବା ସ୍ଥାନଭ୍ରଷ୍ଟ ହୋଇ ମନ ଉପାଧି ଧାରଣ କରିଥାଏ । ମନର ଅତୀତ ଅବସ୍ଥାହିଁ ତେଣୁ ଆତ୍ମଜ୍ଞାନ ଅବସ୍ଥା ବୋଲି ଯୋଗ ଓ ବେଦାନ୍ତର ସିଦ୍ଧାନ୍ତ । ସ୍ୱରୂପରେ ଅବସ୍ଥାନ ହିଁ ଆତ୍ମ ଦର୍ଶନ । ପ୍ରକୃତରେ ପୃଥିବୀର ସବୁଠାରୁ ବଡ଼ ରହସ୍ୟ ହେଉଛି ମଣିଷର ଆତ୍ମା । ମଣିଷର ପ୍ରକୃତ ସ୍ୱରୂପ, ତା'ର ଆରମ୍ଭ ଓ ଶେଷ କେଉଁଠି ତାହା ଜାଣିବା ହିଁ ମଣିଷର ଗଭୀର ଜିଜ୍ଞାସା । ଆତ୍ମଜ୍ଞାନ ହିଁ ଜୀବନର ପରମ ଲକ୍ଷ୍ୟ ।

ଧର୍ମର ପରିଭାଷାରେ ପରମାତ୍ମା ହିଁ ଭଗବାନ । ଆତ୍ମାହିଁ ଆନନ୍ଦ ସ୍ୱରୂପ । ଏହା ମନୁଷ୍ୟର ସବୁଠାରୁ ପ୍ରିୟ । ସେ ସତ୍ ଚିତ୍ ଆନନ୍ଦ । ଜୀବାତ୍ମା ପରମାତ୍ମାଙ୍କର ସୂକ୍ଷ୍ମତମ ପ୍ରତିବିମ୍ବ । ଭଗବଦ୍ ଗୀତା ୨ୟ ଅଧ୍ୟାୟ ୨୦ ଶ୍ଳୋକରେ ଅଛି–

ନ ଜାୟତେ ମ୍ରିୟତେ ବା କଦାଚିତ୍
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ।

ଗୀତାର ତଥ୍ୟ ଅନୁସାରେ ଏହି ଆତ୍ମା ଜନ୍ମ ହୁଏ ନାହିଁ, ଉତ୍ପନ୍ନ ହୁଏ ନାହିଁ । ଏହା ଜନ୍ମ ରହିତ, ନିତ୍ୟ ଶାଶ୍ୱତ ଓ ପୁରାଣ ବା ପରି–ଣାମ ଶୂନ୍ୟ । ଶରୀର ବିନଷ୍ଟ ହେଲେ ମଧ୍ୟ ଏହାର ବିନାଶ ହୁଏ ନାହିଁ । କେବଳ ଏହି ଆତ୍ମା ଶରୀରରୁ ଶରୀରାନ୍ତକୁ ଗତି କରିଥାଏ ।

ଯୋଗ ମଧ୍ୟରେ କ୍ରିୟ ଯୋଗ ଆତ୍ମ ଦର୍ଶନର ଶ୍ରେଷ୍ଠ ବୈଜ୍ଞାନିକ ପ୍ରକ୍ରିୟା । ଏହା ମାନବ ଜାତିର ଦ୍ରୁତ ଉତ୍‌ଥାନ କାରୀ ଏକ ପ୍ରାଚୀନ ବିଜ୍ଞାନ । କ୍ରିୟାଯୋଗର ଏହି ପୁଣ୍ୟତୋୟା ସାଧନା ଯୁଗ ଯୁଗ ଧରି ଭାରତରେ ଆତ୍ମ ଦର୍ଶନର ମାର୍ଗ ଦର୍ଶନ ଦେଇ ଆସିଛି । ସମ୍ଭବତଃ ମାନବ ଜାତିର ଅଭ୍ୟୁଦୟ କାଳରୁ ଏହି ପ୍ରକ୍ରିୟାର ଉଦ୍‌ଭବ ହୋଇଛି । ତେବେ ଏହାକୁ କ୍ରିୟାଯୋଗ ବୋଲି ପରବର୍ତ୍ତୀ କାଳରେ ନାମିତ କରାଯାଇଛି । ଜନ୍ମ ସହିତ ଜାତ ଶ୍ୱାସ ପ୍ରଶ୍ୱାସ କ୍ରିୟା ବା ପ୍ରାଣକ୍ରିୟା ଉପରେ ଏହା ଆଧାରିତ ହୋଇଥିବାରୁ ବୌଦ୍ଧ ତାନ୍ତ୍ରିକ ଯୁଗରେ ଏହା ସମ୍ଭବତଃ ସହଜ ସାଧନା ନାମରେ ପରିଚିତ ଥିଲା । ଗୀତାରେ ଯେଉଁ ଯୋଗ ଓ ଗୂହ୍ୟତମ ବିଦ୍ୟାର କୁହାଯାଇଛି ତାହା କ୍ରିୟାଯୋଗର ପ୍ରାକ୍‌ରୂପ ।

ପାତଞ୍ଜଳ ଯୋଗ ଦର୍ଶନରେ ସାଧନ ପାଦର ପ୍ରଥମ ସୂତ୍ରରେ କ୍ରିୟାଯୋଗ ପଦର ବ୍ୟବହାର କରି କୁହାଯାଇଛି— 'ତପଃ ସ୍ୱାଧ୍ୟାୟେଶ୍ୱର ପ୍ରଣିଧାନାନି କ୍ରିୟାଯୋଗଃ ।' (ଯୋଗଦର୍ଶନ—୨ । ୧) ଏହାର ତାତ୍ପର୍ଯ୍ୟ ହେଲା ଯେ ତପ ସ୍ୱାଧ୍ୟାୟ ଈଶ୍ୱର ପ୍ରଣିଧାନକୁ କ୍ରିୟାଯୋଗ କୁହାଯାଏ । ଏହି ଈଶ୍ୱର ହିନ୍ଦୁଙ୍କର ବହୁ ଦେବଦେବୀ ରୂପରେ ପୂଜିତ— ଏହା ପ୍ରାଣ ସ୍ୱରୂପ । ଏହି ପ୍ରାଣ ହିଁ ଭଗବାନ୍ ଈଶ୍ୱର । ତେଣୁ କୁହାଯାଇଛି—

'ପ୍ରାଣୋ ହି ଭଗବାନୀଶଃ ପ୍ରାଣୋ ବିଷ୍ଣୁ ପିତାମହ
ପ୍ରାଣେନ ଧାର୍ଯ୍ୟତେ ଲୋକଃ ସର୍ବଂ ପ୍ରାଣମୟଂ ଜଗତ୍ ।

ପ୍ରକୃତରେ ସ୍ଥିର ପ୍ରାଣ ହିଁ ଚଞ୍ଚଳ ପ୍ରାଣର ଉତ୍ସ, ସ୍ଥିର ପ୍ରାଣ ହିଁ ବ୍ରହ୍ମ । ଦେହ ମଧ୍ୟରେ ସେହିଁ ଆତ୍ମା, ଏହି ସ୍ଥିର ଆତ୍ମା ଶ୍ୱାସ ପ୍ରଶ୍ୱାସ ରୂପରେ ଚଞ୍ଚଳତା ପ୍ରାପ୍ତ ହେଲେ ତାହାକୁ ପ୍ରାଣ ବୋଲି କୁହାଯାଏ । ତେଣୁ ଏହି ପ୍ରାଣ ହିଁ ଈଶ୍ୱର ଏବଂ ଚଞ୍ଚଳ ପ୍ରାଣର ଅତୀତ ଅବସ୍ଥା ବା ସ୍ଥିର ଅବସ୍ଥା ହିଁ ଆତ୍ମା ବା ପରମାତ୍ମା । 'ମନସଃ ଇନ୍ଦ୍ରିଆଣାଂ' ଚ ଏକାଗ୍ରଂ ତପ ଉଚ୍ୟତେ । ମନ ଓ ଇନ୍ଦ୍ରିୟର କର୍ମ ପ୍ରାଣକ୍ରିୟାରୁ ଜାତ ଏହାହିଁ ଗୀତାର ସହଜ କର୍ମ । ସଂଯମ ବା ଏକାଗ୍ର ଅଭ୍ୟାସ ଫଳରେ ଯେଉଁ ଯୋଗ ସାଧନା କରଯାଏ ତାହାକୁ ତପ କୁହାଯାଇ ପାରେ । ସ୍ୱାଧ୍ୟାୟ ଅର୍ଥ ଆତ୍ମ ଅଧ୍ୟୟନ ବା ଆତ୍ମ ଜିଜ୍ଞାସା । ଏହି ମହାପ୍ରାଣରୂପୀ ଈଶ୍ୱରଙ୍କ ପ୍ରଣିଧାନ ହିଁ କ୍ରିୟାଯୋଗ ।

ମନକୁ ସ୍ଥିର ରଖିବା ପାଇଁ ଗୀତାରେ ଦଇଟି ଉପାୟ କୁହା-ଯାଇଛି ତାହା ହେଉଛି ଅଭ୍ୟାସ ଓ ବୈରାଗ୍ୟ । ଏହି ଅଭ୍ୟାସ ହିଁ ତପ. ବୈରାଗ୍ୟ ହେଉଛି ଅଭ୍ୟାସର ଫଳ । ଏହି ପ୍ରାଣ କ୍ରିୟାର ଅଭ୍ୟାସ ହିଁ ସହଜକର୍ମ । ଏହା ଆଧୁନିକ କ୍ରିୟାଯୋଗର ଅନ୍ୟ ଏକ ନାମ । ଏହି ଅଭ୍ୟାସ ବା ସାଧନା ହେଉଛି ଈଶ୍ୱର ପ୍ର ଧାନ ପାଇଁ କ୍ରିୟା । ସର୍ବଦା ଆତ୍ମ ସଲୀନ ହେବା ପାଇଁ ଏହି ପ୍ରୟାସ ଫଳରେ ବୈରାଗ୍ୟ ବା ପ୍ରକୃତିର ଗୁଣ ସୁଖ, ଦୁଃଖ ଆସକ୍ତି ବିରକ୍ତି ଦ୍ୱନ୍ଦ୍ୱ ଭବରୁ ମୁକ୍ତ ଅବସ୍ଥା ଲବ୍ଧ ହୁଏ । ଏହା କ୍ରମଶଃ ସମାଧି ଆଡ଼କୁ, ଗଭୀର ଧ୍ୟାନ ଅବସ୍ଥାକୁ ନେଇଯାଏ । ସେହି ଦୃଷ୍ଟିରୁ ଅଭ୍ୟାସ ଓ ବୈରାଗ୍ୟ ହେଉଛି ତପ ଓ ସ୍ୱାଧ୍ୟାୟର ସମଭିବ ।

ପାତଞ୍ଜଳ ସୂତ୍ର ସାଧନ ପାଦରେ କୁହାଯାଇଛି – ' ସ ହି କ୍ରିୟା-ଯୋଗଃ ସମାଧି ଭବନାର୍ଥଃ କ୍ଲେଶ ତନୁ କରଣାର୍ଥଶ୍ଚ । (ସୂତ୍ର–୨–୨) ।

ଏହି କ୍ରିୟାଯୋଗ ଦ୍ୱାରା ସମାଧି ସାଧନା କରୁକରୁ ଶରୀର ଓ ମନର କ୍ଳେଶର ଲାଘବ ହୋଇଯାଏ । ତେଣୁ ପାତଞ୍ଜଳ ସୂତ୍ର କ୍ରିୟାଯୋଗ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହା ମଧ୍ୟ ଆଧୁନିକ କ୍ରିୟାଯୋଗର ପୂର୍ବରୂପ । ଆଲୋଚକମାନେ ଏହା ଅବହିତ ହୋଇ ନ ପାରି ପାତଞ୍ଜଳ ଯୋଗକୁ ରାଜଯୋଗ ବା ଅଷ୍ଟାଙ୍ଗ ଯୋଗ ବୋଲି କହିଛନ୍ତି । ଗୀତାରେ ଏହି କ୍ରିୟାଯୋଗ ଅଷ୍ଟାଦଶ ଯୋଗ ମଧ୍ୟରେ ବର୍ଣ୍ଣିତ ହୋଇଛି । ତେଣୁ କ୍ରିୟାଯୋଗ ଏକ ସୁପ୍ରାଚୀନ ବିଜ୍ଞାନ । ଯେଉଁ ଯୋଗବିଦ୍ୟା ଶ୍ରୀକୃଷ୍ଣ ଅର୍ଜୁନକୁ ଦେଇଥିଲେ, ଯାହା ପତଞ୍ଜଳି ପରବର୍ତ୍ତୀ କାଳରେ ଅବଗତ ହୋଇଥିଲେ, ଏହା ସେହି ବିଜ୍ଞାନର ପୁନର୍ଜ୍ଜୀବନ ଏହା ଯଥାର୍ଥରେ ପ୍ରାଣକ୍ରିୟାର ସାଧନା ।

ଭଗବଦ୍ ଗୀତାରେ ପ୍ରାଣାୟାମ ପରାୟଣ ହୋଇ ଯେଉଁ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଆହୁତି ଦ୍ୱାରା ତପସାଧନା କଥାର ଉଲ୍ଲେଖ ଅଛି- ଏହା ସେହି ପ୍ରାଚୀନ କ୍ରିୟାଯୋଗ । ପ୍ରାଣର ସାଧନା ଦ୍ୱାରା ମନ ଓ ବୁଦ୍ଧିର ସଂଯମ ହିଁ ଏହି କ୍ରିୟାଯୋଗ । ଶ୍ରୀକୃଷ୍ଣ ପୂର୍ବତନ ଅବତାର କାଳରେ ଏହି ଅମର ଯୋଗ ସାଧନା ପ୍ରଣାଳୀ ତାଙ୍କଠାରୁ ପରମଜ୍ଞାନୀ ବୈବସ୍ୱତ ମନୁ ଓ ଇକ୍ଷ୍ୱାକୁ ପ୍ରଭୃତି ଲାଭ କରିଥିଲେ । ଏହିପରି ଲୋକ ପରମ୍ପରା କ୍ରମେ ଯେଉଁ ରାଜଯୋଗ ପ୍ରାଚୀନ ଋଷିଗଣଙ୍କ ଦ୍ୱାରା ସଂରକ୍ଷିତ ହୋଇ ଆସିଥିଲା, ଯାହା ନିଜବୋଧ ରୂପ ପରମଗୁହ୍ୟ ଜ୍ଞାନବିଜ୍ଞାନ ସମ୍ପନ୍ନ ଅଶୁଭରୁ ମୁକ୍ତିକାରୀ ସାଧନା ବୋଲି ଗୀତାରେ ପ୍ରୋକ୍ତ ହୋଇ ଆସିଛି— ସେହି ଯୋଗ ପାତଞ୍ଜଳ ଯୋଗଶାସ୍ତ୍ରରେ କ୍ରିୟାଯୋଗ ନାମରେ ପରିଚିତ ଥିଲା । ପ୍ରାଣର ସାଧନା ହିଁ ଗୀତାରେ ରାଜଯୋଗ

ନାମରେ ପରିଚିତ । ପ୍ରାଣର ସଂଯମ ଦ୍ୱାରା ଚିତ୍ତବୃତ୍ତିର ସ୍ଥିରତା ସମ୍ପାଦନ ହୋଇଥାଏ । ଭଗବଦ୍ ଗୀତାର ଚତୁର୍ଥ ଅଧ୍ୟାୟରେ କୁହାଯାଇଛି- ଏହି ଯୋଗ ଅନନ୍ତ କାଳଧରି ଚାଲି ଆସିଛି । ଭାରତର ପ୍ରାଚୀନ ଋଷିଗଣ ପରମ୍ପରା କ୍ରମେ ଏହି ସାଧନା ପ୍ରାପ୍ତ ହୋଇଥିଲେ ।

## କ୍ରିୟାଯୋଗର ଆଦ୍ୟଗୁରୁ : ମହାବତାର ବାବାଜୀ:-

ମହାବତାର ବାବାଜୀ ପ୍ରାଚୀନ ଯୋଗ ବିଜ୍ଞାନକୁ ବହୁଯୁଗର ବିସ୍ମୃତିର ଅତଳ ଗହ୍ୱରରୁ ପୁନରୁଦ୍ଧାର କରି ଏହି ପ୍ରାଚୀନ ପ୍ରଣାଳୀର ବିଶୁଦ୍ଧତା ସମ୍ପାଦନ କରି ଏହାର ନାମ କରଣ କରିଥିଲେ କ୍ରିୟାଯୋଗ । ମହାମୁନୀ ବାବାଜୀଙ୍କ ଯଥାର୍ଥ ପରିଚୟ ଏବେ ମଧ୍ୟ ରହସ୍ୟାବୃତ୍ତ । ତାଙ୍କୁ କେନ୍ଦ୍ରକରି ଏପରି ପୁରାଣ କଳ୍ପନା ଗଢି ଉଠିଛି ଯେ ତାହାର ସତ୍ୟ ଉଦ୍‌ଘାଟନ ଏକ ପ୍ରକାର ଅସମ୍ଭବ । କେହି କେହି ସେ ପାଞ୍ଚଶହ ବର୍ଷରୁ ଊର୍ଦ୍ଧ୍ୱ ହେବ କାୟାକଳ୍ପ କରି ବଞ୍ଚି ରହିଛନ୍ତି ବୋଲି କହୁଥିବା ବେଳେ କେହି ସେ ବିଶ୍ୱର ଆଦିକାଳରୁ ବଞ୍ଚି ରହିଛନ୍ତି ବୋଲି ମଧ୍ୟ କହୁଛନ୍ତି । ସବୁଠାରୁ ଆଶ୍ଚର୍ଯ୍ୟ କଥା, କେଉଁ ସୀମାହୀନ ପ୍ରାଚୀନ କାଳରୁ ତାଙ୍କ ଆବିର୍ଭାବ ପ୍ରଥମେ ହୋଇଥିଲା ତାହା ମଧ୍ୟ ଅଜ୍ଞାତ । କଳ୍ପ କଳ୍ପ ଯୁଗ ଯୁଗ ଧରି ସେ ଏପର୍ଯ୍ୟନ୍ତ ମଧ୍ୟ ସ୍ୱଶରୀରରେ ରହିଛନ୍ତି । ବହୁ ପ୍ରାଚୀନ କାଳରୁ ସାମ୍ପ୍ରତିକ କାଳ ପର୍ଯ୍ୟନ୍ତ ବହୁ ସାଧକଙ୍କ ଜୀବନରେ ବାବାଜୀଙ୍କ ସହ ସାକ୍ଷାତକାର ଘଟିଛି । ଏବେ ବିଶ୍ୱରେ ସେ ବାବାଜୀ ବୋଲି ପରିଚିତ ହେଲେ ମଧ୍ୟ କାଳ କାଳାନ୍ତରରେ ଯୁଗ ଯୁଗାନ୍ତରରେ ତାଙ୍କ ନାମ କ'ଣ ଥିଲା. ତାହା ମଧ୍ୟ ଜଣାନାହିଁ ।

ବାବାଜୀଙ୍କ ସମ୍ବନ୍ଧରେ କୌଣସି ଐତିହାସିକ ଉଲ୍ଲେଖ ମିଳେ ନାହିଁ । ବାବାଜୀଙ୍କ ସମ୍ପର୍କରେ ଇଂରାଜୀ, ବଙ୍ଗଳାରେ କିଛି ଗ୍ରନ୍ଥ ଦେଖିବାକୁ

ମିଳେ । ଏପରିକି କେହି କେହି ବାବାଜୀଙ୍କର ଶିଷ୍ୟ ବୋଲି ଦାବୀ କରୁଥିବା ବେଳେ, ଅନ୍ୟମାନେ ଏହା ମିଥ୍ୟା କଳ୍ପନା ବୋଲି କହୁଛନ୍ତି । କାରଣ କେଉଁ ଶତାବ୍ଦୀରେ ମଧ୍ୟ ମହାଗୁରୁ କେବେ ପ୍ରକାଶ୍ୟରେ ଆବିର୍ଭୂତ ହୋଇ ନାହାନ୍ତି । ଏକମାତ୍ର ନୀରବ ମହାଶକ୍ତିମାନ ବିଶ୍ୱ-ସ୍ରଷ୍ଟା ଭଳି ବାବାଜୀ ରହସ୍ୟମୟ ଆତ୍ମଗୋପନ ମଧ୍ୟରେ, ଯୁଗ ଯୁଗାନ୍ତ ବ୍ୟାପୀ କର୍ମ ପ୍ରଚେଷ୍ଟା ମଧ୍ୟରେ ନିଃଶବ୍ଦରେ ମାନବ ଜାତିର ଉତ୍ଥାନର ପ୍ରୟାସ କରି ଆସିଛନ୍ତି । ଏହି ମହାଗୁରୁ ସମସ୍ତ ଐତିହାସିକ ବନ୍ଧନର ବହୁ ଉର୍ଦ୍ଧ୍ୱରେ ବିଦ୍ୟମାନ । ଯୁଗ ଯୁଗ ବିତି ଯାଇଥିଲେ ମଧ୍ୟ ଏହି ମହାଗୁରୁ ଚିର ଯୁବକ ତାଙ୍କ ଦେହରେ ବାର୍ଦ୍ଧକ୍ୟର କୌଣସି ଚିହ୍ନ ପରିଲକ୍ଷିତ ହୁଏ ନାହିଁ ବୋଲି ପ୍ରତ୍ୟକ୍ଷଦର୍ଶୀ ବହୁସାଧକ କହିଛନ୍ତି ।

ଏହି ଅକଳ୍ପନୀୟ ମହାବତାରଙ୍କର ପରିଚୟ ଆବିଷ୍କାର କରିବାର ସକଳ ପ୍ରୟାସ ବୃଥା । ନିଜେ ଲାହିଡ଼ୀ ମହାଶୟ କହିଛନ୍ତି ଯେ ଯେ ବାବାଜି, ସେ କୃଷ୍ଣ, ସେ ସମସ୍ତଙ୍କ କୂଟସ୍ଥରେ ବିଦ୍ୟମାନ । ସମ୍ଭବତଃ ସେ ଯୋଗର ଆଦି ଆଗ୍ରର୍ଯ୍ୟ ହିରଣ୍ୟଗର୍ଭ ହୋଇପାରନ୍ତି । ଅଧୁନା ବିଲୁପ୍ତ ହିରଣ୍ୟଗର୍ଭଙ୍କ ସୂତ୍ରର ଆଧାର ଉପରେ ପତଞ୍ଜଳି ମୁନି ଯୋଗଦର୍ଶନ ରଚନା କରିଛନ୍ତି । ଏହାଙ୍କ ପୂର୍ବରୁ କ୍ରିୟାଯୋଗ ନିଶ୍ଚିତ ଭାବରେ ଗୁରୁ ପରମ୍ପରାରେ ସଞ୍ଜୀବିତ ରହିଆସିଥିଲା ଓ ପତଞ୍ଜଳି ମୁନି ସେହି ସାଧନା-ଧାରାର ସିଦ୍ଧ ଆଗ୍ରର୍ଯ୍ୟ ଥିଲେ । ସମଗ୍ର ପାତଞ୍ଜଳ ଦର୍ଶନ ଯେ କ୍ରିୟାଯୋଗ ସାଧନା ଦର୍ଶନ ତାହା କ୍ରିୟାଯୋଗର ଆଧୁନିକ ଆଗ୍ରର୍ଯ୍ୟଗଣ ସ୍ୱୀକାର କରନ୍ତି । ଯୋଗିରାଜ ଶ୍ୟାମାଚରଣ ଲାହିଡ଼ୀ କଥିତ ଦୀପିକା ସହ ପାତଞ୍ଜଳ ଯୋଗ-ସୂତ୍ରର ସଂକ୍ଷିପ୍ତ କ୍ରିୟାଯୋଗୀଂ ବ୍ୟାଖ୍ୟା ମଧ୍ୟ ପ୍ରକାଶିତ ହୋଇଛି ।

ଶ୍ରୀକୃଷ୍ଣ, ରାମଚନ୍ଦ୍ର, ବୁଦ୍ଧଦେବ ପ୍ରଭୃତି ପ୍ରାଚୀନ ଭାରତୀୟ ଅବତାର ସେମାନେ ନିଜ ନିଜର ଲୀଳା ସମାପନ କରି ଏହି ମର ଜଗତରୁ ଶରୀର ପାତ କରିଛନ୍ତି । ମାତ୍ର ବାବାଜୀ କାଳ କାଳ ଧରି ଅମର ରହି ଆସିଥିବାରୁ ତାଙ୍କୁ ମହାବତାର କୁହାଯାଏ । ତାଙ୍କର ଅଲୌକିକ କାହାଣୀ ସମ୍ପର୍କରେ ପରମହଂସ ଯୋଗାନନ୍ଦଙ୍କ ଆତ୍ମଜୀବନୀରେ ସବିଶେଷ ବର୍ଣ୍ଣନା ଦେଖିବାକୁ ମିଳେ । ପରମହଂସ ଯୋଗାନନ୍ଦ ତାଙ୍କ ବିଶ୍ୱ-ବିଶ୍ରୁତ ଗ୍ରନ୍ଥ । 'Autobiography of a Yogi' ରେ ଲେଖିଛନ୍ତି- 'ବଦରୀନାରାୟଣ ନିକଟରେ ଉତ୍ତର ହିମାଚଳ ପ୍ରଦେଶର ଶୈଳ ଶିଖରରେ ଲାହିଡ଼ୀ ମହାଶୟଙ୍କ ଗୁରୁ ବାବାଜୀ ମହାରାଜ ଏ ପର୍ଯ୍ୟନ୍ତ ମଧ୍ୟ ଜୀବିତ ଅବସ୍ଥାରେ ବିଦ୍ୟମାନ ଅଛନ୍ତି । ନିଃସଙ୍ଗ ମହାଗୁରୁ ତାଙ୍କ ନଶ୍ୱର ଦେହ ଶତାବ୍ଦୀ ଶତାବ୍ଦୀ, ଯୁଗ ଯୁଗାନ୍ତ ଧରି ରକ୍ଷା କରି ଆସିଛନ୍ତି । ମରଣଜୟୀ ବାବାଜୀ ଜଣେ ମହାଅବତାର ।

ଶ୍ରୀଯୁକ୍ତେଶ୍ୱରଜୀ ମଧ୍ୟ କହିଥିଲେ- 'ବାବାଜୀଙ୍କର ଆଧ୍ୟାତ୍ମିକ ଅବସ୍ଥା ମାନବ କଳ୍ପନାର ଅତୀତ ।' 'ଭାରତରେ ବାବାଜୀଙ୍କ ଜୀବନର ଉଦ୍ଦେଶ୍ୟ ହେଉଛି- ମହାପୁରୁଷ ମାନଙ୍କର ବିଶେଷ ବିଧାନ ପାଳନରେ ସହାୟତା କରିବା । ପରମହଂସ ଯୋଗାନନ୍ଦ ଲେଖିଛନ୍ତି - ଇତିହାସ ପ୍ରସିଦ୍ଧ ଗୋବିନ୍ଦ ଯତିଙ୍କ ଶିଷ୍ୟ ଶଙ୍କରାଚାର୍ଯ୍ୟ କାଶୀରେ ବାବାଜୀଙ୍କଠାରୁ ଯୋଗଦୀକ୍ଷା ପ୍ରାପ୍ତ ହୋଇଥିଲେ । ମଧ୍ୟଯୁଗର ମହାଗୁରୁ ସନ୍ଥ କବୀରଙ୍କୁ ମଧ୍ୟ ସେ ଯୋଗଦୀକ୍ଷା ଦେଇଥିଲେ । ଊନବିଂଶ ଶତାବ୍ଦୀରେ ତାଙ୍କର ପ୍ରଧାନ ଶିଷ୍ୟ ହେଉଛନ୍ତି, ଲୁପ୍ତ କ୍ରିୟାଯୋଗର ପୁନରୁଦ୍ଧାରକ ଲାହିଡୀ ମହାଶୟ । ଏବେ ମଧ୍ୟ କେହି କେହି ବାବାଜୀଙ୍କର ଶିଷ୍ୟ ବୋଲି ଦାବୀ କରି କ୍ରିୟାଯୋଗ

ପ୍ରଚାର ପାଇଁ ଚେଷ୍ଟା କଲେଣି । ମାତ୍ର ଏହା ଉଦ୍ଦେଶ୍ୟ ମୂଳକ ସଙ୍କଳ୍ପିତ ପ୍ରୟାସ ବୋଲି ଅଧିକାଂଶ କ୍ରିୟାବାନ ସାଧକଗଣଙ୍କର ଅଭିମତ ।

## ଆଧୁନିକ କ୍ରିୟାଯୋଗର ଭଗୀରଥ : ଯୋଗାବତାର ଶ୍ୟାମାଚରଣଃ–

ଯେତେବେଳେ ଧର୍ମର ଗ୍ଳାନି ହୁଏ, ଅଧର୍ମ ପରିବ୍ୟାପ୍ତ ହୋଇଯାଏ, ପରମାତ୍ମାଙ୍କ ପ୍ରତିନିଧି ଭାବରେ ଏହି ବିଶ୍ୱରେ ଏକ ମହାନ୍ ଆତ୍ମାର ଅବତରଣ ଘଟେ । ଧର୍ମନାମରେ ଅନ୍ଧ ବିଶ୍ୱାସ, ମତାନ୍ଧତା, ଧାର୍ମିକ ବହିରଙ୍ଗ, ମିଥ୍ୟା କଳ୍ପନା ଜଳ୍ପନା ବିଶେଷ ପ୍ରାଧାନ୍ୟ ଲାଭ କରିଛି । ତେଣୁ ଜନ ସାଧାରଣ ଧର୍ମଠାରୁ ବହୁଦୂରରେ ଅଛନ୍ତି, ଧର୍ମର ବହିରା-ବରଣକୁ ହିଁ ଉପାସନା କରୁଛନ୍ତି ; ଆତ୍ମ ଜାଗରଣ ହିଁ ମାନବର ଜନ୍ମଗତ ଅଧିକାର । ଏହି ଅମୃତ ଅନୁଭୂତିର ଆସ୍ୱାଦନ ଦେବାପାଇଁ ଯୁଗଯୁଗ ଧରି ଭଗବାନ ତାଙ୍କର ଶକ୍ତି ବା ପ୍ରତିନିଧିଙ୍କୁ ପଠାଇଥାନ୍ତି ।

ଆଧୁନିକ କାଳରେ ମାନବ ଜାତିର ଦ୍ରୁତ ବିବର୍ତ୍ତନ ଓ ଆତ୍ମ-ବିକାଶ ନିମିତ୍ତ ମହାମୁନୀ ବାବାଜୀ ପ୍ରାଚୀନ କ୍ରିୟାଯୋଗ ସାଧନାକୁ ପୁନଃ ପ୍ରବର୍ତ୍ତନ କରିଥିଲେ । ତେଣୁ ହିମାଳୟର ବାବାଜୀ ମହାମୁନୀଙ୍କ ରାଣୀକ୍ଷେତ ଗୁହାଥିଲା ଆଧୁନିକ କ୍ରିୟାଯୋଗ ଗଙ୍ଗୋତ୍ରୀର ଉତ୍ସ । ଏହିଠାରୁ ଲାହିଡୀ ବାବା କ୍ରିୟାଯୋଗ ଦୀକ୍ଷା ଗ୍ରହଣ କରି ସେହି ସାଧନା ମାନବ ଜାତି ପାଇଁ ପ୍ରଦାନ କରିଛନ୍ତି । ଏହି ବୈଜ୍ଞାନିକ କ୍ରିୟାଯୋଗ ପ୍ରକ୍ରିୟାଦ୍ୱାରା ଶରୀର, ମନ ଓ ଆଧ୍ୟାତ୍ମିକ ବିକାଶ କିପରି ହେବ ଏବଂ

ଦେହାତୀତ ଭଗବଦ୍ ଅବସ୍ଥା ନିର୍ଗୁଣ ପ୍ରଶାନ୍ତ ଅବସ୍ଥା, କିପରି ସହଜ ଲଭ୍ୟ ହେବ ବାବାଜୀ ମହାରାଜ ତାହା ତାଙ୍କର ଗୃହୀଶିଷ୍ୟ ଶ୍ୟାମାଚରଣ ଲାହିଡ଼ୀ ମହାଶୟଙ୍କୁ ଦେଇଥିଲେ । ଏରତର ଲୁପ୍ତ କ୍ରିୟାଯୋଗକୁ ପୁନଃ–ପ୍ରସାର କରିଥିବାରୁ ଲାହିଡୀ ବାବା ଯୋଗାବତାର ଭାବରେ ପରିଚିତ ।

ଜଣେ ଗୃହସ୍ଥ ଜୀବନ, ସାଧାରଣ ମଣିଷ ଜୀବନ ଯାପନ କରି ଉଚ୍ଚତମ ଆଧ୍ୟାତ୍ମିକ ଜୀବନ ସହ କିପରି ସମନ୍ୱୟ ରକ୍ଷା କରାଯାଇ–ପାରେ ଶ୍ୟାମାଚରଣ ଲାହିଡ଼ୀ ଥିଲେ ତା'ର ଏକ ଶ୍ରେଷ୍ଠ ଆଦର୍ଶ । ସେ ୧୮୨୮ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୩୦ ତାରିଖରେ ବଙ୍ଗଳାର ନଦୀଆ ଜିଲ୍ଲାର ଘୁରୁଣୀ ନାମକ ଅଖ୍ୟାତ ପଲ୍ଲୀରେ ଜନ୍ମ ଗ୍ରହଣ କରିଥିଲେ । ସେହି ଗ୍ରାମ ବନ୍ୟାପ୍ଲାବିତ ହେଇ ଧ୍ୱଂସ ହୋଇଯିବାରୁ ପିଲାକାଳରୁ ସପରିବାର ବେନାରସ୍‌ରେ ଅବସ୍ଥାନ କରିଥିଲେ । ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାଲାଭ କରି ରେଲୱେ ଏକାଉଣ୍ଟାଣ୍ଟ ଭାବରେ କାର୍ଯ୍ୟ କରିଥିଲେ । ୧୮ ବର୍ଷ ବୟସ କାଳରେ ତାଙ୍କର କାଶୀମଣିଙ୍କ ସହ ବିବାହ ହୋଇଥିଲା । ତାଙ୍କର ପିତା ଗୌରମୋହନ ଓ ମାତା ଶ୍ରୀମତୀ ମୁକ୍ତାକେଶୀ ଥିଲେ ନିଷ୍ଠାବାନ ବ୍ରାହ୍ମଣ ବଂଶୀୟ ।

ଶ୍ରୀ ଶ୍ୟାମାଚରଣ ଲାହିଡ଼ୀ ମହାଶୟଙ୍କର କେତୋଟି ପୁତ୍ରକନ୍ୟା ହୋଇଥିଲା । ଜ୍ୟେଷ୍ଠ ପୁତ୍ର ଶ୍ରୀ ତିନିକଡ଼ି ଲାହିଡ଼ୀ ଓ କନିଷ୍ଠ ପୁତ୍ର ଶ୍ରୀ ଦୁକଡ଼ି ଲାହିଡୀ ତାଙ୍କଠାରୁ କ୍ରିୟାଯୋଗ ଦୀକ୍ଷା ନେଇଥିଲେ । ୧୮୬୨ ଖ୍ରୀଷ୍ଟାବ୍ଦରେ ସେ ଚାକିରି ଉପଲକ୍ଷେ ରାଣୀକ୍ଷେତକୁ ବଦଳି ହୋଇଥିଲେ । ଦୀକ୍ଷା ପରେ ବାବାଜୀଙ୍କ ସ୍ପର୍ଶରେ ଲାହିଡ଼ୀ ବାବା ସମାଧିସ୍ଥ ହେଲେ । ଶ୍ରୀ ଶ୍ୟାମାଚରଣ

ଅଳ୍ପକାଳ ମଧ୍ୟରେ ଯୋଗ ସାଧନାର ସମସ୍ତ ସ୍ତର ପାର ହୋଇ ସିଦ୍ଧିଲାଭ କରିଥିଲେ । ବାବାଜୀ ମହାରାଜ ତାହାଙ୍କୁ କ୍ରିୟାଯୋଗ ପ୍ରଚାର କରିବା ପାଇଁ ଆଦେଶ ଦେବାରୁ ସେ ବହୁଶିଷ୍ୟ କରିଥିଲେ । ଧନୀ, ଦରିଦ୍ର, ସ୍ତ୍ରୀ, ପୁରୁଷ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ସନ୍ନ୍ୟାସୀ, ପରମହଂସ ପ୍ରଭୃତି ନାନା ସଂପ୍ରଦାୟର ଲୋକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏପରିକି ତାଙ୍କର ଶ୍ୱଶୁର ପଣ୍ଡିତ ବେଦ ନାରାୟଣ ବାଚସ୍ପତି ଏବଂ ତାଙ୍କର ଦୀକ୍ଷା–ଦାତା କୁଳଗୁରୁ ତାଙ୍କଠାରୁ କ୍ରିୟାଯୋଗ ଦୀକ୍ଷା ଗ୍ରହଣ କରିଥିଲେ ।

ତାଙ୍କର ବହୁ ଉଚ୍ଚାଙ୍ଗ ଶିଷ୍ୟ ଏହି କ୍ରିୟାଯୋଗ ଧାରାକୁ ସମଗ୍ର ଭାରତରେ ପ୍ରସାର କରିଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ସ୍ୱାମୀ ଯୁକ୍ତେଶ୍ୱର ଗିରି, ପଞ୍ଚାନନ ଭଟ୍ଟାଚାର୍ଯ୍ୟ, ଉପେନ୍ଦ୍ରନାଥ ସନ୍ୟାଲ, ରାମଦୟାଲ ମଜୁମଦାର, ସ୍ୱାମୀ କେବଳାନନ୍ଦ, କାଳୀକୁମାର ବାନାର୍ଜୀ, ଶ୍ରୀ ପ୍ରସାଦ ଦାସ ଗୋସ୍ୱାମୀ, ହରିନାରାୟଣ ପାଲଧି, ବ୍ରହ୍ମଚାରୀ କେଶବାନନ୍ଦ, ସ୍ୱାମୀ ଭାସ୍କରାନନ୍ଦ ସରସ୍ୱତୀ, ସ୍ୱାମୀ ବାଳାନନ୍ଦ ମହାରାଜ କ୍ରିୟାଯୋଗର ପୁଣ୍ୟତୋୟା ଗଙ୍ଗାଧାରକୁ କ୍ରମଶଃ ପରିବ୍ୟାପ୍ତ କରିବାକୁ ପ୍ରୟାସ କରିଥିଲେ । ଭାରତରେ ଏବେ ପ୍ରାୟ ଷାଠିଏରୁ ଊର୍ଦ୍ଧ୍ୱ କ୍ରିୟାଯୋଗ ଆଶ୍ରମ ଅଛି । ଶାଖା ପ୍ରଶାଖା କ୍ରମରେ ଏହି ସବୁ ଆଶ୍ରମର ବ୍ରହ୍ମଚାରୀ, ସନ୍ନ୍ୟାସୀ ଓ ପ୍ରୋନ୍ନତ କ୍ରିୟାବାନ୍ ଗୃହୀ ସାଧକମାନେ ଲାହିଡ଼ୀ ବାବାଙ୍କ ପ୍ରବର୍ତ୍ତିତ କ୍ରିୟାଯୋଗ ସାଧନା ଅନୁସରଣ କରୁଛନ୍ତି ।

ଶ୍ୟାମାଚରଣଙ୍କ ଜୀବନର ବହୁ ଅଲୌକିକ ଘଟଣା ପରମହଂସ ଯୋଗାନନ୍ଦଙ୍କ ଜୀବନୀ ତଥା 'ଭାରତର ସାଧକ' ଗ୍ରନ୍ଥରେ ବର୍ଣ୍ଣିତ

ହୋଇଛି । ତାଙ୍କର ପୌତ୍ର ଶ୍ରୀ ସତ୍ୟଚରଣ ଲାହିଡ଼ୀଙ୍କ ସଂକଳନରେ ଶ୍ରୀ ଅଶୋକ କୁମାର ଚଟ୍ଟୋପାଧ୍ୟାୟ 'ପୁରାଣ ପୁରୁଷ ଯୋଗିରାଜ ଶ୍ରୀ ଶ୍ୟାମାଚରଣ ଲାହିଡ଼ୀ ' ଚରିତ ଗ୍ରନ୍ଥ ପ୍ରକାଶ ପାଇଛି । ଯୋଗିରାଜ ପ୍ରକାଶନ ସଂସ୍ଥାରୁ ମଧ୍ୟ 'ଶ୍ୟାମାଚରଣ ଗ୍ରନ୍ଥାବଳୀ' ପ୍ରକାଶିତ ହୋଇଛି । ଏହି ସବୁ ଗ୍ରନ୍ଥରୁ ତାଙ୍କର ମହାନ୍ ଚରିତ୍ରର ପରିଚୟ ଉଦ୍‌ଘାଟିତ ହୋଇଛି । ଶ୍ରୀ ଶ୍ୟାମାଚରଣ ଯୋଗମାର୍ଗରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲେ ମଧ୍ୟ ସଂସାର ଜୀବନ ତାଙ୍କର ବହୁ ଝଡ଼ଝଞ୍ଜାରେ ଆକ୍ରାନ୍ତ ଥିଲା । ତାଙ୍କର ଗୋଟିଏ କନ୍ୟା ଥିଲା ବିଧବା । ଜ୍ୟେଷ୍ଠପୁତ୍ର ତିନିକଡ଼ି ଲାହିଡ଼ୀଙ୍କ ଜୀବନାନ୍ତରୁ ପୁତ୍ରଶୋକ ସେ ପାଇଥିଲେ । ଶେଷରେ ସ୍ୱୟଂ କାରବାଙ୍କଲ ରୋଗରେ ଆକ୍ରାନ୍ତ ହୋଇ କଷ୍ଟ ଭୋଗ କରି ଦେହତ୍ୟାଗ କରିଥିଲେ ।

ଯୋଗୀରାଜ ଶ୍ୟାମାଚରଣ ୧୮୯୫ ସେପ୍‌ଟେମ୍ବର ୨୬ ତାରିଖ ଗୁରୁବାର ମହାଷ୍ଟମୀର ସନ୍ଧିକ୍ଷଣରେ ଯୋଗାରୂଢ଼ ହୋଇ ସଜ୍ଞାନରେ ଦେହତ୍ୟାଗ କରିଥିଲେ । ଜୀବନର ସମସ୍ତ ଦୁଃଖ ଓ ସୁଖ ସେ ପ୍ରତ୍ୟକ୍ଷ ଅନୁଭବ କରିଥିଲେ, ମାନବ ଜାତିର ବେଦନାର ଭାର ଲାଘବ ପାଇଁ ବିଶେଷ ଭାବରେ ଗୃହୀ ମଣିଷର ଶ୍ରେଷ୍ଠ ଅବଲମ୍ବନ ଓ ସାଧନ ପ୍ରକ୍ରିୟା ଭାବରେ କ୍ରିୟାଯୋଗର ଅମୃତଧାରା ପୃଥିବୀ ପାଇଁ ବିତରଣ କରି ଯାଇଥିଲେ । ତେଣୁ ତାଙ୍କର ମହାନ୍ ଜୀବନ ଗୃହୀ ସାଧକ ମାନଙ୍କର ଥିଲା ଶ୍ରେଷ୍ଠ ସାନ୍ତ୍ୱନା ଓ ପ୍ରେରଣା ଦାୟକ ଯଥାର୍ଥ ଆଦର୍ଶ । ସେ କହୁଥିଲେ 'ଦିନ ଥିଲେ ଯେପରି ରାତି ଥାଏ' ସୁଖ ଥିଲେ ସେପରି ଦୁଃଖ ଥାଏ । ସେହିଭଳି ଇଷ୍ଟ ଥିଲେ ଅନିଷ୍ଟ ଥାଏ । ପ୍ରାଣର ସେବା କର, ପ୍ରାଣର ସେବା କରିଲେ ହିଁ ଇଷ୍ଟ, ନକଲେ ଅନିଷ୍ଟ । ପ୍ରାଣକର୍ମ କଲେ ହିଁ ପ୍ରାଣର

ସେବା କରଯାଏ । ପ୍ରାଣର ଚଞ୍ଚଳତା ହିଁ ଅନିଷ୍ଟ, ସ୍ଥିରତା ହିଁ ଇଷ୍ଟ ।" ଏକ ଅମର ବିଜ୍ଞାନ ମଣ୍ଡିତ ସହଜ ଯୋଗ ସାଧନାର ପ୍ରବର୍ତ୍ତକ ଭାବରେ ଯୋଗିରାଜ ମାନବ ସମାଜର ମହାନ୍ କଲ୍ୟାଣର ପଥ ଦର୍ଶାଇ ଯାଇଛନ୍ତି ।

## ପୁରୀ କଡ଼ାର ଆଶ୍ରମ ଓ ଶ୍ରୀ ଯୁକ୍ତେଶ୍ୱରଜୀ:-

ଶ୍ରୀ ଯୁକ୍ତେଶ୍ୱରଜୀ ଥିଲେ ଲହିଡୀ ବାବାଙ୍କର ଜଣେ ପ୍ରଧାନ ଶିଷ୍ୟ । ସେ ପୂର୍ବବଙ୍ଗର ହୁଗୁଲି ଜିଲ୍ଲାର ଶ୍ରୀରାମପୁରରେ ତା ୧୦ ରିଖ ମେ ୧୮୫୫ ଖ୍ରୀ· ଅ: ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା କ୍ଷେତ୍ରମୋହନ କଡ଼ାର ଥିଲେ ଜଣେ ଜମିଦାର ତଥା ବ୍ୟବସାୟୀ । ଶ୍ରୀ ଯୁକ୍ତେଶ୍ୱରଜୀଙ୍କ ଗୃହସ୍ଥାଶ୍ରମର ନାମ ଥିଲା ପ୍ରିୟନାଥ କଡାର । ପ୍ରିୟନାଥ କଡ଼ାର ମହାଶୟ ୨୯ ଅଗଷ୍ଟ ୧୮୮୩ ଖ୍ରୀ: ଅ: ରେ ଯୋଗିରାଜଙ୍କଠାରୁ ଦୀକ୍ଷା ପାଇଥିଲେ ବୋଲି ଲହିଡ଼ୀ ବାବାଙ୍କ ଡ଼ାଏରୀରେ ଲିଖିତ ଅଛି । ଲହିଡୀ ମହାଶୟଙ୍କ ଭଳି ଶ୍ରୀ ଯୁକ୍ତେଶ୍ୱରଜୀ ସଂସାର କରିଥିଲେ । ତାଙ୍କର ସ୍ତ୍ରୀ ଗୋଟିଏ କନ୍ୟା ଜନ୍ମକରି ମୃତ୍ୟୁବରଣ କରିଥିଲେ ଏବଂ ତାଙ୍କ କନ୍ୟାଟି ମଧ୍ୟ ବିବାହର ଅଳ୍ପଦିନ ପରେ ମରି ଯାଇଥିଲେ । ଭାରତୀୟ ପରମ୍ପରା ଅନୁସାରେ ତେଣୁ ଶ୍ରୀଯୁକ୍ତେଶ୍ୱରଜୀ ଥିଲେ ପୂର୍ଣ୍ଣଯୋଗୀ । କାରଣ ସେ ବ୍ରହ୍ମଚର୍ଯ୍ୟ, ଗୃହସ୍ଥାଶ୍ରମ, ବାନପ୍ରସ୍ଥ ଓ ସନ୍ୟାସ ମଧ୍ୟ ଗ୍ରହଣ କରିଥିଲେ ।

ସେ ବେଦ, ଉପନିଷଦ, ଜ୍ୟୋତିଷ ଓ ଜ୍ୟୋତିର୍ବିଦ୍ୟାରେ ଧୁରୀଣ ପଣ୍ଡିତ କେବଳ ନଥିଲେ, ଲହିଡ଼ୀ ବାବାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଆଧ୍ୟାତ୍ମିକ ସାଧନାରେ ସେ ଥିଲେ ଅଗ୍ରଗଣ୍ୟ । ଶ୍ରୀଯୁକ୍ତେଶ୍ୱରଜୀ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜ୍ୟୋତିଷ ବିଦ୍ୟାରେ ଗଭୀର ପ୍ରବେଶ କରି ତା' ମଧ୍ୟରେ

ଥିବା ଭ୍ରମ ଜାଣି ପାରିଥିଲେ । ଶରୀର ମଧ୍ୟରେ ଗ୍ରହ ତାରାଗଣଙ୍କର ପ୍ରଭାବ କ୍ରିୟାଯୋଗଦ୍ୱାରା କିପରି ପ୍ରତିହତ କରଯାଇ ପାରେ ସେହି ରହସ୍ୟମୟ ବିଶ୍ୱ ଜ୍ୟୋତିଷ ଯୋଗ ବିଜ୍ଞାନ (Cosmic Astrology) ଆବିଷ୍କାର କରି ପାରିଥିଲେ । ଭାରତୀୟ ସଂସ୍କୃତିରେ ସୂର୍ଯ୍ୟ ହିଁ କାଳ ନିରୂପଣର ପ୍ରଧାନ ଉପାୟ । ହିନ୍ଦୁ ଜ୍ୟୋତିର୍ବିଜ୍ଞାନୀଙ୍କ ମତରେ ଚନ୍ଦ୍ର ଓ ପୃଥିବୀ ଭଳି ସୂର୍ଯ୍ୟ ମଧ୍ୟ ଆବର୍ତ୍ତନ ଗତିଯୁକ୍ତ । କ୍ରିୟାଯୋଗ ପ୍ରକ୍ରିୟାରେ ମସ୍ତିଷ୍କରେ ଦେହ ସୂର୍ଯ୍ୟ ଏବଂ ଚନ୍ଦ୍ରରୂପୀ ମନଦ୍ୱାରା ଚନ୍ଦ୍ରର ପୃଥିବୀ ପରିକ୍ରମାର ପ୍ରକ୍ରିୟା ଦେହରୂପୀ ବ୍ରହ୍ମାଣ୍ଡରେ ଅନୁଷ୍ଠାନ କରିବା କ୍ରିୟାଯୋଗ ସାଧନାର ଗୋଟିଏ ରହସ୍ୟପୂର୍ଣ୍ଣ ଦିଗ । ଏହି ପ୍ରକ୍ରିୟା ଦ୍ୱାରା କ୍ରିୟା ସାଧନା ନିଷ୍ଠା ସହକାରେ ଅନୁଷ୍ଠିତ ହେଲେ ସାଧକ ତୀବ୍ର ଅଭ୍ୟୁତ୍‌ଥାନ ଓ ବିବର୍ତ୍ତନ ଫଳରେ କଳ୍ପ କଳ୍ପର ସଂସାର ଅତିକ୍ରମ କରିପାରେ । ବାହ୍ୟ ଜଗତରେ ବାହ୍ୟ ସୂର୍ଯ୍ୟକୁ କୁହାଯାଏ ବିଶ୍ୱର କାରଣ ଶରୀର, ଚନ୍ଦ୍ରକୁ ସୂକ୍ଷ୍ମ ଶରୀର ଏବଂ ଗ୍ରହ ଉପଗ୍ରହାଦି ସ୍ଥୂଳ ଶରୀର । ବିଶ୍ୱର ପ୍ରତୀକ ରୂପରେ ମାନବର ସୃଷ୍ଟି ହେବାରୁ ବିଶ୍ୱର ପ୍ରତୀକ ରୂପରେ ସମସ୍ତ ଦେହ ହିଁ ମାନବ ଶରୀରରେ ବର୍ତ୍ତମାନ । ମାନବ ମସ୍ତିଷ୍କରେ ଆଜ୍ଞାଚକ୍ର ସୂର୍ଯ୍ୟର ପ୍ରତୀକ ଏବଂ ମାନବର ମନ ଚନ୍ଦ୍ରର ପ୍ରତୀକ । ସୁଷୁମ୍ନା ପଥରେ ମସ୍ତିଷ୍କଠାରୁ ଦୂରତମ ମୂଳାଧାର ଚକ୍ର ପର୍ଯ୍ୟନ୍ତ ଥରେ ପରିକ୍ରମା ପ୍ରାଣକ୍ରିୟା ଦ୍ୱାରା କରିପାରିଲେ ଆଜ୍ଞାଚକ୍ର ପର୍ଯ୍ୟନ୍ତ ଥରେ ତାହା ଉତ୍ତୋଳିତ କରିପାରିଲେ ଗୋଟିଏ ଚନ୍ଦ୍ରମାସର ଅନୁରୂପ କ୍ରିୟା ସମ୍ପନ୍ନ ହୋଇଥାଏ । ଏହିପରି ଗଭୀରତର କ୍ରିୟାଦ୍ୱାରା ଅତି ଅଳ୍ପ ସମୟରେ ଦୈବଯୁଗ ସମତୁଲ୍ୟ କ୍ରିୟା ସମ୍ପାଦିତ ହୁଏ । ଏହି ରହସ୍ୟ ହିଁ ଶ୍ରୀଯୁକ୍ତେଶ୍ୱରଜୀଙ୍କର ଏକ ମହାନ ଆବିଷ୍କାର ।

କ୍ରିୟାଯୋଗର ଆଦିଗୁରୁ ବାବାଜୀଙ୍କ ସହ ମଧ୍ୟ ଶ୍ରୀଯୁକ୍ତେଶ୍ୱରଜୀଙ୍କର ସାକ୍ଷାତ ଘଟିଥିଲା । ଥରେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ବାଇବେଲ ଓ ଗୀତାର

ସମନ୍ୱୟ ରକ୍ଷାକରି, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ ଉପରେ ଆଧାର କରି ଏକ ଗ୍ରନ୍ଥ ରଚନା କରିବାକୁ ବାବାଜୀ ମହାରାଜ ନିର୍ଦ୍ଦେଶ ଦେଇଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କ ବିବରଣରୁ ଜଣାପଡ଼େ ଯେ ପାଶ୍ଚାତ୍ୟର ବିଜ୍ଞାନ ଓ ସଂସ୍କୃତି ସମ୍ପର୍କରେ ମଧ୍ୟ ବାବାଜୀ ମହାରାଜ ସଚେତନ ଥିଲେ । ଏହି ସାଧନାର ଧାରା ପ୍ରାଚ୍ୟ ଓ ପାଶ୍ଚାତ୍ୟ ସର୍ବତ୍ର ପ୍ରସାର ଆବଶ୍ୟକ ତାହା ସେ ପ୍ରକାଶ କରିଥିଲେ । ବାବାଜୀ ମହାରାଜଙ୍କ ପ୍ରେରଣାରୁ ସେ 'କୈବଲ୍ୟଦର୍ଶନ' ରଚନା କରି-ଥିଲେ । ସ୍ୱାମୀ ଶ୍ରୀଯୁକ୍ତେଶ୍ୱରଜୀଙ୍କ ରଚିତ 'କୈବଲ୍ୟ ଦର୍ଶନ' କ୍ରିୟାଯୋଗ ଦର୍ଶନ ଭିତ୍ତିକ ଏକ ଅଭିନବ ଗ୍ରନ୍ଥ । ଶ୍ରୀଯୁକ୍ତେଶ୍ୱରଜୀଙ୍କ ସହ ମହାତ୍ମା ବାବାଜୀଙ୍କର ତିନିଥର ସାକ୍ଷାତ ସମ୍ବାଦ ମିଳେ । ୧୮୯୪ ଖ୍ରୀଷ୍ଟାବ୍ଦରେ ଯମୁନାତୀରରେ କୁମ୍ଭମେଳା ଅଧିବେଶନ କାଳରେ ପରମଗୁରୁ ମହାମୁନୀ ବାବାଜୀ ତାଙ୍କୁ ଆହ୍ୱାନ କରି ଏହିପରି ଏକ ଗ୍ରନ୍ଥ ରଚନା କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ପାଶ୍ଚାତ୍ୟ ଖ୍ରୀଷ୍ଟଧର୍ମାବଲମ୍ବୀଗଣଙ୍କର ହିନ୍ଦୁ ଅଧ୍ୟାତ୍ମ ଦର୍ଶନର ମୌଳିକ ତତ୍ତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଥିଲା ଏହି ରଚନାର ମୌଳିକ ଉଦ୍ଦେଶ୍ୟ । ଏହା ବ୍ୟତୀତ "ଭଗବଦ୍ ଗୀତା"ର ଯୋଗ ବ୍ୟାଖ୍ୟା ଓ 'ଗୀତାର ତତ୍ତ୍ୱ' ନାମରେ ଏକ କ୍ଷୁଦ୍ର ପୁସ୍ତିକା ମଧ୍ୟ ରଚନା କରିଥିଲେ । ସେଥିପାଇଁ କ୍ରିୟାଯୋଗର ପରମ୍ପରାରେ ସେ ଜ୍ଞାନା-ବତାର ଭାବରେ ପରିଚିତ ହୋଇଛନ୍ତି ।

ଶ୍ରୀଯୁକ୍ତେଶ୍ୱରଜୀ ଥିଲେ ଦିବ୍ୟ ଦ୍ରଷ୍ଟା, ଯୋଗୀ ଓ ସିଦ୍ଧପୁରୁଷ । ଗୁରୁଭାବରେ ସେ କଠୋର ନୀତି ପରାୟଣ ଥିଲେ । ପରମହଂସ ଯୋଗାନନ୍ଦ ତାଙ୍କ ଆତ୍ମଜୀବନୀ ଲେଖିଛନ୍ତି– 'ମୁଁ ମୁକ୍ତକଣ୍ଠରେ କହିପାରେ ଯେ ଶ୍ରୀଯୁକ୍ତେଶ୍ୱର ଗିରିଜୀ ଭାରତବର୍ଷ ମଧ୍ୟରେ ସର୍ବାପେକ୍ଷା କାଙ୍କ୍ଷିତ

ସ୍ଥା ହୋଇ ପାରିଥାନ୍ତେ ଯଦି ତାଙ୍କର କଥାଗୁଡ଼ିକ ଏତେ ସରଳ ଓ ତିରସ୍କାର ମୂଳକ ହୋଇ ନଥା'ନ୍ତା ।' କଠିନ ଶାସନର ଅଗ୍ନିରେ ସୁବର୍ଣ୍ଣକୁ ଯୋଡ଼ି ସେ ଯେଉଁ ଶିଷ୍ୟଗୁଡ଼ିକ ପ୍ରସ୍ତୁତ କରିଥିଲେ, ସେମାନେ ସମସ୍ତେ ବିଶ୍ୱବିଶ୍ରୁତ ହୋଇଥିଲେ । ପରମହଂସ ଯୋଗାନନ୍ଦ, ସ୍ୱାମୀ ସତ୍ୟାନନ୍ଦ ଗିରି, ସ୍ୱାମୀ ହରିହରାନନ୍ଦ ଗିରି, ସ୍ୱାମୀ ନାରାୟଣ ଗିରି, ଆଚାର୍ଯ୍ୟ ମୋତିଲାଲ ମୁଖାର୍ଜୀ, ସ୍ୱାମୀ ସଚ୍ଚିଦାନନ୍ଦ, ସ୍ୱାମୀ ଭବାନନ୍ଦ ଗିରି, ଆଚାର୍ଯ୍ୟ ବିଜୟ କୁମାର ଚଟାର୍ଜୀ, ସ୍ୱାମୀ ପରମାନନ୍ଦ ଗିରି, ଆଚାର୍ଯ୍ୟ ଅମୂଲ୍ୟ କୁମାର ସାନ୍ତ୍ରା ପ୍ରଭୃତି ଥିଲେ ତାଙ୍କର ଉଚ୍ଚାଙ୍ଗ ସାଧକ ଶିଷ୍ୟ । ଶ୍ରୀଯୁକ୍ତେଶ୍ୱରଜୀ ଏମାନଙ୍କୁ କଠିନ ନୀତି ନିୟମ ମଧ୍ୟରେ ଗଠନ କରିଥିଲେ । ଏହା ବ୍ୟତୀତ ପଶ୍ଚିମ ବଙ୍ଗ ବିଧାନ ସଭାର ଏମ. ଏଲ. ଏ ଶ୍ରୀ ପାଞ୍ଚକୋଡ଼ି ଦେ, ଅମୂଲ୍ୟ ଚରଣ ଦାସ, ଅତୁଲ ଚନ୍ଦ୍ର ଚୌଧୁରୀ, ଶ୍ରୀ ଶୈଳେନ୍ଦ୍ର ବିଜୟ ଦାଶଗୁପ୍ତ ମଧ୍ୟ ତାଙ୍କର ସୁପରିଚିତ ଶିଷ୍ୟ । ସମଗ୍ର ବଙ୍ଗଳା ଦେଶରେ କ୍ରିୟାଯୋଗ ପ୍ରସାର ହେଉଛି ଶ୍ରୀଯୁକ୍ତେଶ୍ୱରୀଙ୍କ ମହାନ ତପସ୍ୟାର ଫଳଶ୍ରୁତି ।

ଲହିଡ଼ୀ ବାବାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଶ୍ରୀଯୁକ୍ତେଶ୍ୱରଜୀ ହିଁ ଥିଲେ ସଂଗଠକ । ପରମହଂସ କେଶବାନନ୍ଦଙ୍କର ଆଶ୍ରମ ଋଷିକେଶ ଓ ଉତ୍ତର ପ୍ରଦେଶରେ ବୃନ୍ଦାବନଠାରେ ଅଛି । ପ୍ରଣବାନନ୍ଦ ଗିରିଙ୍କର ମଧ୍ୟ କିଛି ଅନୁଷ୍ଠାନ ନଥିଲା । ତାଙ୍କ ଭଗବଦ୍ ଗୀତାର ଆଧ୍ୟାତ୍ମିକ ତତ୍ତ୍ୱ ତାଙ୍କର ଗୃହୀଶିଷ୍ୟ ଶ୍ରୀ ଜ୍ଞାନେନ୍ଦ୍ର କୁମାର ମୁଖର୍ଜୀଙ୍କ ଦ୍ୱାରା ପ୍ରକାଶିତ ହୋଇଛି । ସ୍ୱାମୀ କେବଳାନନ୍ଦ ମଧ୍ୟ କୌଣସି ଅନୁଷ୍ଠାନ ଗଢ଼ି ନଥିଲେ । ସ୍ୱାମୀ ଶୁଦ୍ଧାନନ୍ଦ ଗିରି ଅଧୁନା ସେବାୟତନର ସଭାପତି ତାଙ୍କର ଏକମାତ୍ର ପ୍ରସିଦ୍ଧ ଶିଷ୍ୟ । ଆଚାର୍ଯ୍ୟ ଭୁପେନ୍ଦ୍ର ନାଥ ସାନ୍ୟାଲ ପୁରୀରେ ଆଶ୍ରମ

କରିଥିଲେ । ତାଙ୍କର ବହୁ ଗ୍ରନ୍ଥ ବିଶେଷତଃ ଭଗବଦ୍ ଗୀତାର ଆଧ୍ୟାତ୍ମିକ ବ୍ୟାଖ୍ୟା ପାଇଁ ସେ ବିଶେଷ ଭାବରେ ଗୌରବ ଅର୍ଜନ କରିଛନ୍ତି । ତାଙ୍କର ଜଣେ ଯୋଗ୍ୟ ଶିଷ୍ୟ ଗୃହୀ କ୍ରିୟାଯୋଗୀ ଶ୍ରୀ ଜ୍ୱାଲାପ୍ରସାଦଜୀ ବିହାର ଓ ଓଡ଼ିଶାରେ ତଥା ବିଭିନ୍ନ ସ୍ଥାନରେ କ୍ରିୟାଯୋଗର ବହୁଶିଷ୍ୟଙ୍କୁ ପ୍ରେରଣା ଦାନ କରିଛନ୍ତି । ଆଚାର୍ଯ୍ୟ ବ୍ରଜଲାଲ ଅଧିକାରୀଙ୍କର ମଧ୍ୟ ସେପରି କିଛି ଅନୁଷ୍ଠାନ ନଥିଲା । ଆଚାର୍ଯ୍ୟ ପଞ୍ଚାନନ ଭଟ୍ଟାଚାର୍ଯ୍ୟ ଥିଲେ ଶ୍ରୀ ଲାହିଡ଼ୀ ବାବାଙ୍କର ଯଥାର୍ଥରେ ପ୍ରଚାରକ । ସେ ବହୁଗ୍ରନ୍ଥ ବିଶେଷତଃ 'ସୁରଧୁନୀ ଗୀତା' ପ୍ରଭୃତି ଗ୍ରନ୍ଥ ରଚନା କରି ପ୍ରସିଦ୍ଧି ଅର୍ଜନ କରିଛନ୍ତି । ମାତ୍ର ତାଙ୍କର ପ୍ରତିଷ୍ଠାନ ଆଉ ସମ୍ପ୍ରସାରିତ ହୋଇ ପାରିନଥିଲା । ଲାହିଡ଼ୀ ବାବାଙ୍କର ନିଜର ସ୍ୱତନ୍ତ୍ର ଅନୁଷ୍ଠାନ କିଛି ନଥିଲା । ଅବଶ୍ୟ ପାରିବାରିକ ପରମ୍ପରାକ୍ରମେ ତାଙ୍କର ପ୍ରପୌତ୍ର ସତ୍ୟଚରଣ ଲାହିଡୀଙ୍କ ପ୍ରଚେଷ୍ଟାରେ ଲାହିଡ଼ୀ ବାବାଙ୍କ ଜୀବନ, ଦର୍ଶନ ଓ ଶ୍ୟାମାଚରଣ ଗ୍ରନ୍ଥାବଳୀ ଶ୍ରୀ ଅଶୋକ କୁମାର ଚଟ୍ଟୋପାଧ୍ୟାୟଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଛି । ପ୍ରକୃତରେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଶିଷ୍ୟ ଓ ପ୍ରଶିଷ୍ୟଗଣଙ୍କ ଦ୍ୱାରା ହିଁ କ୍ରିୟାଯୋଗ ବିଶ୍ୱବ୍ୟାପୀ ରୂପ ପରିଗ୍ରହ କରିଛି ।

ଶ୍ରୀଯୁକ୍ତେଶ୍ୱରଜୀ ସାରାଭାରତ ଭ୍ରମଣ କରି କ୍ରିୟାଯୋଗ ପ୍ରଚାର କରିଥିଲେ । ସେ ୧୮୯୮ ଖ୍ରୀ: ଅ: ରେ ପ୍ରଥମେ ଓଡ଼ିଶା ପୁରୁଷୋତ୍ତମ ଧାମକୁ ଷ୍ଟିମରରେ ଆସିଥିଲେ । କାରଣ ସେତେବେଳେ ପର୍ଯ୍ୟନ୍ତ ରେଲୱେ ନିର୍ମିତ ହୋଇସାରି ନଥିଲା । ୧୯୦୦ ଠାରୁ ପୁରୀକୁ ରେଲୱେ ନିର୍ମାଣ ହେବାର ବ୍ୟବସ୍ଥା ହେବାରୁ ଶ୍ରୀଯୁକ୍ତେଶ୍ୱରଜୀ ପ୍ରତିବର୍ଷ ପୁରୀ ଆସି କ୍ରିୟାଯୋଗ ସମ୍ପର୍କରେ ଭାଷଣ ଦେଉଥିଲେ ଓ ଜ୍ୟୋତିଷ ଚର୍ଚ୍ଚା କରୁଥିଲେ । ସେତେବେଳେ ସାମନ୍ତ ଚନ୍ଦ୍ରଶେଖର ଓଡ଼ିଶାର ସୁପ୍ରସିଦ୍ଧ

ଜ୍ୟୋତିର୍ବିଦ୍ ଥିଲେ । ତାଙ୍କର ଦେହାନ୍ତ ହୋଇଯାଇ ଥିବାରୁ ଶ୍ରୀଯୁକ୍ତେଶ୍ୱରଜୀଙ୍କର ତାଙ୍କ ସହ ସାକ୍ଷାତକାର ହୋଇ ପାରିନଥିଲା । କ୍ରିୟାଯୋଗ ଓଡ଼ିଶାରେ ମଧ୍ୟ ଏକାନ୍ତ ଅପରିଚିତ ନଥିଲା । କାରଣ ଶଙ୍କରାନନ୍ଦ ମଠ ପୁରୀରେ ଏହି ମଠର ଚଉରାଳିଶ ତମ ମହନ୍ତ ସଚ୍ଚିଦାନନ୍ଦ ସରସ୍ୱତୀ ମଧ୍ୟ 'କ୍ରିୟାଯୋଗ ପ୍ରସାରିଣୀ ସଭା' ନାମରେ ଏକ ଅନୁଷ୍ଠାନ ଢ଼ିଥିଲେ ବୋଲି ମଠର ତଥ୍ୟରୁ ଜଣାପଡ଼େ । ମାତ୍ର ତାହା କ୍ରମେ ବିଲୁପ୍ତ ହୋଇ ଯାଇଥିଲା । ଶ୍ରୀଯୁକ୍ତେଶ୍ୱରଜୀଙ୍କ ଚେଷ୍ଟାଫଳରେ ବହୁ ପଣ୍ଡିତ ଓ ଶିକ୍ଷିତ ବ୍ୟକ୍ତି ତାଙ୍କ ପ୍ରତି ଅନୁଗତ ହୋଇଥିଲେ । ସେ କାଳର ପୁରୀ ମୁନିସିପାଲିଟି ଅଫିସର ଏକ କ୍ରିୟାଯୋଗ ଆଶ୍ରମ ପ୍ରତିଷ୍ଠା ପାଇଁ କିଛି ଜମି ଦେବାପାଇଁ ବ୍ୟବସ୍ଥା କରିଥିଲେ ।

୧୯୦୩ ଖ୍ରୀଷ୍ଟାବ୍ଦରେ ଶ୍ରୀଯୁକ୍ତେଶ୍ୱରଜୀ ବର୍ତ୍ତମାନର କଡ଼ାର ଆଶ୍ରମର ନିକଟରେ ଥିବା ବିଦୁର ମଠରେ ରହୁଥିଲେ । ଅଦ୍ୟାବଧି ପୁଣ୍ୟତୋୟା ମହୋଦଧି ତୀରରେ ଭକ୍ତଶ୍ରେଷ୍ଠ ମଲୁକଙ୍କ ଆଶ୍ରମ ଅଛି । ଏହାଙ୍କଠାରୁ ଖୁଦ ପିଠା ଓ ଶାଗ ଭକ୍ଷଣ କରି ମହାପ୍ରଭୁ ଆମ୍ଭ ସନ୍ତୋଷ ଲାଭ କରିଥିଲେ ବୋଲି ପ୍ରସିଦ୍ଧ ଅଛି । ଏହି ମଲୁକ ଚୌରା ତୀର୍ଥଯାତ୍ରୀଙ୍କ ନିକଟରେ 'ବିଦୁର ମଠ' ନାମରେ ବିଶେଷ ଭାବରେ ପରିଚିତ । କାରଣ ମହାତ୍ମା ମଲୁକ ବିଦୁରଙ୍କ ଅବତାର ବୋଲି ଭକ୍ତଗଣ ସ୍ୱୀକାର କରନ୍ତି– ଦ୍ୱାପର ଯୁଗରେ ହିଁ ଏହିପରି ଉଦାହରଣ ଥିଲା । ଦ୍ୱାରକାଧିପତି ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନ-ଷଡ଼ରସ ବ୍ୟଞ୍ଜନ ପ୍ରତ୍ୟାଖ୍ୟାନ କରି ବିଦୁରର ଖୁଦଭାତ ଓ ଶାଗ ଗ୍ରହଣ ଗ୍ରହଣ କରିଥିଲେ । ଶ୍ରୀଯୁକ୍ତେଶ୍ୱରଜୀ ଏହି ଆଶ୍ରମର କୂର୍ମ ପୀଠାକାର ସାଧନ ଭୂମି ଉପରେ ବାଲୁକା ଶର୍ଯ୍ୟା ଓ ଆରଣ୍ୟକ ପରିବେଶରେ ଘଣ୍ଟା ଘଣ୍ଟାଧରି ଧ୍ୟାନମଗ୍ନ ରହୁଥିଲେ । କିଛିଦିନ ପରେ ତାଙ୍କର

ଛୃଦବୋଧ ହେଲା ଯେ ଏହି ସ୍ଥାନଟି ଏକ ଉନ୍ନତ ସାଧନା ପୀଠ । ତେଣୁ ଏଠାରେ ଧ୍ୟାନ ପାଇଁ ଓ କ୍ରିୟାଯୋଗ ସାଧନା ପ୍ରସାର ପାଇଁ ଏକ ଆଶ୍ରମ ପ୍ରତିଷ୍ଠା କରିବାର ବାସନା ତାଙ୍କର ମନରେ ଜାଗ୍ରତ ହେଲା । ତେଣୁ ସ୍ୱାମୀ ଶ୍ରୀଯୁକ୍ତେଶ୍ୱରଜୀ ସ୍ୱର୍ଗଦ୍ୱାର ନିକଟରେ ଏହି ଭୂମିରେ ଏକ ଆଶ୍ରମ ପ୍ରତିଷ୍ଠା କରିଥିଲେ ।

ଆଶ୍ରମର ଭୂମି ୧୯୦୬ ଖ୍ରୀଷ୍ଟାବ୍ଦରେ ସରକାରୀ ଭାବରେ ପଟ୍ଟା ନିଆଗଲେ ମଧ୍ୟ ୧୯୦୩ ଖ୍ରୀଷ୍ଟାବ୍ଦ ମହାବିଷୁବ ସଂକ୍ରମଣ ତିଥି ଦିନ ମାର୍ଚ୍ଚ ୨୨ ତାରିଖରେ ଏହି ଆଶ୍ରମର ପ୍ରତିଷ୍ଠା କରିଥିଲେ । ଏହି ଦିନରେ ଦିନ ରାତି ସମାନ ରହେ । ମାର୍ଚ୍ଚ ୨୨ ତାରିଖ ଓ ସେପ୍ଟେମ୍ବର ୨୨ ତାରିଖରେ ବର୍ଷକୁ ମାତ୍ର ଏଭଳି ଦିନ ଆସେ । ଏ ଦିନରେ ଉତ୍ତାପ ଓ ଶୀତଳତା ସମ ପ୍ରଧାନ ଥାଏ । ମଣିଷ ମଧ୍ୟରେ ସତ୍ତ୍ୱ ଭାବ ଓ ରଜଭାବ ସମାନ ରହିଲେ ଜୀବନ ମଧ୍ୟ ପୂର୍ଣ୍ଣ ହୋଇଥାଏ । ମହାବିଷୁବ ସଂକ୍ରମଣକୁ ଏହି ସାମ୍ୟଭାବର ପ୍ରତୀକ ଭାବରେ ଗ୍ରହଣ କରାଯାଇ ପାରେ । ଏହି ଦିନ ଆଶ୍ରମର ପ୍ରତିଷ୍ଠା ଦିବସ କାଳରୁ ପ୍ରତିବର୍ଷ ସାଧୁମଣ୍ଡଳର ସତ୍‌ସଙ୍ଗ ସଭାର ମହା ଅଧିବେଶନ ଅନୁଷ୍ଠିତ ହୋଇ ଆସୁଛି । ଏହା ବ୍ୟତୀତ ପ୍ରତି ରବିବାର ସନ୍ଧ୍ୟା କାଳରେ ସତ୍‌ସଙ୍ଗ ସଭା ଅନୁଷ୍ଠିତ ହୋଇଥାଏ । ସେତେବେଳେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ନାମ ଥିଲା ଶ୍ରୀ ପ୍ରିୟନାଥ କଡ଼ାର । ତେଣୁ ଏହି ଆଶ୍ରମର ନାମ କଡାର ଆଶ୍ରମ ଦିଆଯାଇଥିଲା ।

ଶ୍ରୀ ଯୁକ୍ତେଶ୍ୱରଜୀଙ୍କ ଗଣନା ଅନୁସାରେ ୧୯୦୦ ଖ୍ରୀଷ୍ଟାବ୍ଦରେ ଦ୍ୱାପର ଯୁଗର ଆରମ୍ଭ ହୋଇଥିଲା । ତାଙ୍କର ପରାମର୍ଶ ଅନୁସାରେ ୧୯୦୧ ଖ୍ରୀଷ୍ଟାବ୍ଦ ସତ୍‌ସଙ୍ଗ ସଭା ପ୍ରତିଷ୍ଠିତ ହୋଇଥିଲା । କଡାର ସ୍ୱାମୀ ଥିଲେ ଏହି ପ୍ରତିଷ୍ଠା-

ନର ପ୍ରାଣ, ଅଧ୍ୟକ୍ଷ ଓ ଦିଗ୍‌ଦର୍ଶକ । କଡ଼ାର ଆଶ୍ରମକୁ କେନ୍ଦ୍ର କରି ନାନା ସ୍ଥାନରେ ସତସଙ୍ଗ ସଭାର କେନ୍ଦ୍ର ସ୍ଥାପିତ ହୋଇଥିଲା । ଏହି ସତସଙ୍ଗ ସଭାକୁ ଯୋଗଦା ସତସଙ୍ଗ ସଭା ମଧ୍ୟ କୁହାଗଲା । ପରମହଂସ ଯୋଗାନନ୍ଦ ଗରୁଙ୍କର ପ୍ରତିଷ୍ଠାନର ଏହି ନାମକୁ ସାମାନ୍ୟ ପରିବର୍ତ୍ତନ କରି ଯୋଗଦା ବୋଲି ନାମକରଣ କରିଥିଲେ । ପରେ କଡ଼ାର ସ୍ୱାମୀ ଶ୍ରୀ ପ୍ରିୟନାଥ କଡ଼ାର ୧୯୦୬ ଖ୍ରୀ: ଅ: ରେ ଶ୍ରୀମତ୍ ସ୍ୱାମୀ କୃଷ୍ଣଦୟାଲ ଗିରିଙ୍କଠାରୁ ସନ୍ୟାସ ଗ୍ରହଣ କରି ସ୍ୱାମୀ ଶ୍ରୀଯୁକ୍ତେଶ୍ୱର ଗିରି ନାମରେ ଅଭିହିତ ହୋଇ-ଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କ ଆଶ୍ରମରେ ବହୁ ବ୍ରହ୍ମଚାରୀ ଶିଷ୍ୟ ଓ ଶିକ୍ଷକ ବାସ କରୁଥିଲେ । ତାଙ୍କର ସୁପରିଚାଳନାରେ ଏହା ଏକ ଆଦର୍ଶ ଆଶ୍ରମରେ ପରିଣତ ହୋଇଥିଲା । ଏହି କଡ଼ାର ଆଶ୍ରମ ଥିଲା ତାଙ୍କ ସାଧନାର ଶ୍ରେଷ୍ଠ ପ୍ରତିଭୂ । ଏବେ ବିଶ୍ୱର ସମସ୍ତ କ୍ରିୟାଯୋଗ ଆଶ୍ରମ ମଧ୍ୟରେ ତାଙ୍କ ପ୍ରତିଷ୍ଠିତ ପୁରୀର କଡ଼ାର ଆଶ୍ରମ ଏକ ଶ୍ରେଷ୍ଠ ଆଧ୍ୟାତ୍ମିକ ଶକ୍ତି ସମ୍ପନ୍ନ କ୍ରିୟା ସାଧନାର ପୀଠ ଭାବରେ ବିଶ୍ୱବିଶ୍ରୁତ ହୋଇ ସାରିଛି ।

ପରମହଂସ ଯୋଗାନନ୍ଦ ଥିଲେ ଶ୍ରୀଯୁକ୍ତେଶ୍ୱରଜୀଙ୍କର ପ୍ରିୟ ଶିଷ୍ୟ । ପରମହଂସ ଯୋଗାନନ୍ଦ ଅନେକ ସମୟରେ ପୁରୀରେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସହ ଅବସ୍ଥାନ କରୁଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କର ଇଚ୍ଛା ଥିଲା ଯେ ପରମହଂସ ଯୋଗାନନ୍ଦ କଡାର ଆଶ୍ରମର ଦାୟିତ୍ୱ ନେବେ । ୧୯୨୦ ଖ୍ରୀ: ଅ: ରେ ଆଶ୍ରମର ଭାର ଗ୍ରହଣ କରିବାକୁ ସେ ପରମହଂସ ଯୋଗାନନ୍ଦଙ୍କୁ ପ୍ରସ୍ତାବ ଦେଇଥିଲେ । ମାତ୍ର ପରମହଂସଜୀ କହିଥିଲେ- ସେ ଆମେରିକା ଯିବାକୁ ସ୍ଥିର କରିଥିବାରୁ କଡାର ଆଶ୍ରମରେ ରହିବା ତାଙ୍କ ପକ୍ଷରେ

ସମ୍ଭବ ନୁହେଁ । ସେତେବେଳେ ଶ୍ରୀଯୁକ୍ତେଶ୍ୱରଜୀଙ୍କର ବୟସ ଥିଲା ୬୫ ବର୍ଷ । ସେହି ବର୍ଷ ପରମହଂସ ଯୋଗାନନ୍ଦ ଆମେରିକା ଯାତ୍ରା କରିଥିଲେ ।

ଶ୍ରୀଯୁକ୍ତେଶ୍ୱରଜୀ ୧୯୨୧ ରେ କଡ଼ାର ଆଶ୍ରମର ପରିଚାଳନା ପାଇଁ ଏକ ରେଜିଷ୍ଟାର୍ଡ ଟ୍ରଷ୍ଟି ଗଠନ କଲେ । ଏହି ଟ୍ରଷ୍ଟବୋର୍ଡକୁ 'ସାଧୁସଭା' ବୋଲି ନାମିତ କରାଯାଇଥିଲା । ଏଥିରେ ଶ୍ରୀଯୁକ୍ତେଶ୍ୱରଜୀ ଥିଲେ ସଭାପତି, ପରମହଂସ ଯୋଗାନନ୍ଦ ଥିଲେ ଉପସଭାପତି, ଅନ୍ୟ ସଭ୍ୟମାନଙ୍କ ସହ ଶ୍ରୀ ପ୍ରଭାସ ଚନ୍ଦ୍ର ଘୋଷ, ପରମହଂସ ଯୋଗାନନ୍ଦଙ୍କ ଭାଇ ଥିଲେ ସମ୍ପାଦକ । ଏହି ଟ୍ରଷ୍ଟ ଦଲିଲରେ ଲିଖିତ ଥିଲା ଯେ ଟ୍ରଷ୍ଟିମାନେ ଏହି ଆଶ୍ରମର ସମ୍ପତ୍ତି ବିକ୍ରୟ କରି ପାରିବେ ନାହିଁ–ଏହା କେବଳ ପରିଚାଳନା କରିବେ । ଶ୍ରୀଯୁକ୍ତେଶ୍ୱରଜୀଙ୍କର ଦେହାନ୍ତ ପରେ ପରମହଂସ ଯୋଗାନନ୍ଦ ଏହାର ସଭାପତି ହେବେ ବୋଲି ମଧ୍ୟ ସେଥିରେ ଲିଖିତ ଥିଲା । କଡ଼ାର ଆଶ୍ରମର ସାଧୁ ସଭାପତିଙ୍କୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଓ ସାଧୁମଣ୍ଡଳ ଅଭିଷେକ କରି ପ୍ରତିଷ୍ଠା କରିବେ ବୋଲି ଏକ ପରମ୍ପରା ମଧ୍ୟ ସୃଷ୍ଟି ହୋଇଥିଲା । ସେ କାଳର ବାରଗୋଟି ବିଭିନ୍ନ ଆଶ୍ରମର ସାଧୁମାନଙ୍କୁ କୁହାଯାଉଥିଲା ସାଧୁମଣ୍ଡଳ । ଏହିପରି ଉପସ୍ଥିତ ସାଧୁବ୍ୟକ୍ତି, ବିଭିନ୍ନ ଆଶ୍ରମର ସ୍ୱାମୀ ତଥା ଶଙ୍କରାଚାର୍ଯ୍ୟଙ୍କ ଉପସ୍ଥିତିରେ ସାଧୁମଣ୍ଡଳ ପରବର୍ତ୍ତୀ ସାଧୁସଭାପତିଙ୍କୁ ମଧ୍ୟ ଅଭିଷିକ୍ତ ଓ ପ୍ରତିଷ୍ଠା କରିବା ପରମ୍ପରା ସେହିକାଳରୁ ହିଁ ଅନୁସୃତ ହୋଇ ଆସୁଛି ।

ସାଧୁମଣ୍ଡଳର ପ୍ରଧାନ କାର୍ଯ୍ୟ ଥିଲା ବର୍ଷକରେ ଥରେ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଅର୍ଥାତ୍ ମାର୍ଚ୍ଚ ୨୨ ତାରିଖ ଦିନ ମହାବିଷୁବ ସଂକ୍ରମଣ ତିଥିରେ ସତ୍‌ସଙ୍ଗ ସଭାରେ ଏକତ୍ରିତ ହୋଇ ଆଶ୍ରମର କାର୍ଯ୍ୟ ପନ୍ଥା ଅନୁଧ୍ୟାନ

କରିବା ଓ ସାଧନା ସମ୍ପର୍କରେ ଆଲୋଚନା କରିବା । ଏହି ଦିନଟି ଥିଲା କଡ଼ାର ଆଶ୍ରମର ପ୍ରତିଷ୍ଠା ଦିବସ । ଟ୍ରଷ୍ଟରେ ଲିଖିତ ଥିଲା ଯେ ଯଦି ସଭାପତି ପ୍ରତିବର୍ଷ ଆଶ୍ରମକୁ ନ ଆସନ୍ତି, ତେବେ ସେ କଡ଼ାର ଆଶ୍ରମରେ ସଭାପତି ଭାବରେ ରହିପାରିବେ ନାହିଁ । ପୂର୍ବରୁ 'ଅଖିଳ ଭାରତୀୟ ସାଧୁ ସମାଜ' ନାମରେ ଯେଉଁ ପ୍ରତିଷ୍ଠାନ ଥିଲା ତାହାହିଁ ସାଧୁମଣ୍ଡଳ ନାମରେ ପରିଚିତ ହେଲା । ସ୍ୱାମୀ ଶ୍ରୀଯୁକ୍ତେଶ୍ୱରଜୀ ତାହାର କାର୍ଯ୍ୟକାରୀ ସଭାପତି ବା ସାଧୁସଭାର ସଭାପତି ଭାବରେ ନିର୍ବାଚିତ ହୋଇଥିଲେ । ଶ୍ରୀରାମପୁରର ତାଙ୍କର ବାସଭବନ ପ୍ରିୟଧାମ ପ୍ରଥମେ ସାଧୁସଭାର କେନ୍ଦ୍ର ଭାବରେ କାର୍ଯ୍ୟ କରୁଥିଲେ ମଧ୍ୟ, କଡ଼ାର ଆଶ୍ରମ ପରିଚାଳନା ପାଇଁ ମୁଖ୍ୟତଃ ଏହି ସାଧୁସଭା ହିଁ ଉଦ୍ଦିଷ୍ଟ ଥିଲା ।

ପରମହଂସ ଯୋଗାନନ୍ଦ ୧୯୨୦ ରୁ ୧୯୩୫ ଯାଏ ଦୀର୍ଘ ପନ୍ଦରବର୍ଷ ଆମେରିକାରେ ଅବସ୍ଥାନ କରି ଆମେରିକାରେ କ୍ରିୟାଯୋଗ ସାଧନାର ପ୍ରଚାର କରିଥିଲେ । ସେ ୧୯୩୫ ଅଗଷ୍ଟ ମାସରେ ଭାରତ ପ୍ରତ୍ୟାବର୍ତ୍ତନ କରି ପ୍ରାୟ ଏକବର୍ଷ କାଳ ଅବସ୍ଥାନ କରିଥିଲେ । ଏହି ସମୟରେ ପୁରୀ କଡାର ଆଶ୍ରମଠାରେ ଜ୍ଞାନାବତାର ଶ୍ରୀଯୁକ୍ତେଶ୍ୱରଜୀଙ୍କର ମହାପ୍ରୟାଣ ହୋଇଥିଲା । ୧୯୩୬ ମାର୍ଚ୍ଚ ୯ ତାରିଖରେ ଶ୍ରୀଯୁକ୍ତେଶ୍ୱରଜୀଙ୍କର ମହାସମାଧି ହୋଇଥିଲା । ତାଙ୍କର ସ୍ମୃତି ମନ୍ଦିର କଡାର ଆଶ୍ରମ ମଧ୍ୟରେ ନିର୍ମିତ ହୋଇଥିଲା । ଶ୍ରୀଯୁକ୍ତେଶ୍ୱରଜୀ ଏକାଅଶୀ ବର୍ଷ ବୟସରେ ସଜ୍ଞାନରେ ଶରୀର ତ୍ୟାଗ କରିଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କ ମହାସମାଧି ପରେ ମଧ୍ୟ ତାଙ୍କୁ ବହୁ ବ୍ୟକ୍ତି ଆଶ୍ରମ ମଧ୍ୟରେ ଦର୍ଶନ କରିବାର ବିବରଣ ମିଳେ । ପରମହଂସ ଯୋଗାନନ୍ଦଙ୍କ ବର୍ଣ୍ଣନାରୁ ଜଣାପଡ଼େ ୧୯୩୬ ମସିହା ଜୁନମାସ ଷୋଳ ତାରିଖରେ ବମ୍ବେରେ ରିଜେଣ୍ଟ ହୋଟେଲର ଗୋଟିଏ ପ୍ରକୋଷ୍ଠରେ

ସେ ଧ୍ୟାନସ୍ଥ ହୋଇଥିଲେ ବେଳେ ସମଗ୍ର କକ୍ଷଟି ଦିବ୍ୟ ଜ୍ୟୋତିରେ ଉଦ୍‌ଭାସିତ ହୋଇଗଲା । ସେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ସଶରୀରରେ ତାଙ୍କ ଆଗରେ ଆବିର୍ଭୂତ ହେବା ଦେଖିଲେ । ଦୀର୍ଘ ଦୁଇଘଣ୍ଟାକାଳ ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କୁ ହିରଣ୍ୟଲୋକରେ ତାଙ୍କର ଅବସ୍ଥିତି, ଦିବ୍ୟ ପରିବେଶ ସମ୍ପର୍କରେ ସବିଶେଷ ବିବରଣ ଦେଇଥିଲେ । ସ୍ୱାମୀ ହରିହରାନନ୍ଦ ମଧ୍ୟ ୧୯୩୮ ସାଲ ଶେଷ ଆଡକୁ କଡ଼ାର ଆଶ୍ରମ ପଥରେ ଯିବାବେଳେ ତାଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖିଥିଲେ । ଏହି ସମୟ ପର୍ଯ୍ୟନ୍ତ ପୁରୀ ଆଶ୍ରମରେ ରାତ୍ରି ଓ ଦିବସରେ ବହୁଲୋକ ତାଙ୍କ ସ୍ଥୂଳ ଶରୀର ଦର୍ଶନ କରିଥିଲେ । ସ୍ୱାମୀ ହରିହରାନନ୍ଦ ୧୯୩୮ ସାଲରେ ପୁରୀ ଆସି ସମୁଦ୍ର କୂଳରେ ଗୋଟିଏ ଭଡ଼ା ଘରେ ରହୁଥିଲେ । ସେହି ଘରକୁ ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କର ଜଣେ ବନ୍ଧୁଙ୍କୁ ଦେଖାଇ ଦେଇଥିଲେ । ସେ ସ୍ୱପ୍ନରେ ସ୍ୱାମୀ ହରିହରାନନ୍ଦଙ୍କୁ କଡ଼ାର ଆଶ୍ରମରେ ଅବସ୍ଥାନ କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ପରମହଂସ ଯୋଗାନନ୍ଦ ୧୯୩୬ ସେପଟେମ୍ବର ମାସରେ ଆମେରିକା ଯାତ୍ରାକରି ଆଉ ଭାରତକୁ ଫେରି ନଥିଲେ । ଫଳରେ ସେ ଆଉ କଡାର ଆଶ୍ରମର ସଭାପତି କାର୍ଯ୍ୟ କରିବା ସମ୍ଭବ ନଥିଲା । ସାଧୁମଣ୍ଡଳର ପରାମର୍ଶ ଅନୁଯାୟୀ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଅନ୍ୟତମ ଶିଷ୍ୟ ସ୍ୱାମୀ ସତ୍ୟାନନ୍ଦ ଗିରି ଓଡ଼ିଶାର ପୁରୀ କଡ଼ାର ଆଶ୍ରମର ସଭାପତି ଆସନରେ ଅଭିଷିକ୍ତ ହୋଇଥିଲେ । ପରେ ସ୍ୱାମୀ ସତ୍ୟାନନ୍ଦଜୀ ଝାଡ଼ଗ୍ରାମ ସେବାୟତନରେ ଏକ ସ୍ୱତନ୍ତ୍ର ଆଶ୍ରମ ପ୍ରତିଷ୍ଠା କରି ସେଠାରେ ରହୁଥିଲେ ଏବଂ ସ୍ୱାମୀ ହରିହରାନନ୍ଦଙ୍କ ଉପରେ ଆଶ୍ରମ ଦାୟିତ୍ୱ ନ୍ୟସ୍ତ କରି ମଝିରେ ମଝିରେ ପୁରୀ ଆସୁଥିଲେ ।

୧୯୭୦ ମସିହାରେ ସ୍ୱାମୀ ସତ୍ୟାନନ୍ଦ ଗିରି ପୁରୀ ଆସି ଏହି ଆଶ୍ରମର କର୍ମଧାରା ଦେଖି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ । ସେତେବେଳେ

ସ୍ୱାମୀ ହରିହରାନନ୍ଦ ଗିରି ଥିଲେ ଏହି ଆଶ୍ରମର ଅଧ୍ୟକ୍ଷ । ସେହିବର୍ଷ ସ୍ୱାମୀ ସତ୍ୟାନନ୍ଦ ଗିରି ଗୋଟିଏ ରେଜିଷ୍ଟାର୍ଡ ଉଇଲ କରିଯାଇଥିଲେ ଯେ ତାଙ୍କର ଦେହାନ୍ତ ପରେ ସ୍ୱାମୀ ହରିହରାନନ୍ଦ ସାଧୁ ସଙ୍ଘପତି ହେବେ । ସେହିବର୍ଷ ଅଗଷ୍ଟ ମାସରେ ସତ୍ୟାନନ୍ଦଜୀଙ୍କର ଦେହାନ୍ତ ହୋଇଥିଲା । ୧୯୭୦ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ଶ୍ରୀମତ୍ ସ୍ୱାମୀ ନିରଞ୍ଜନ ଦେବ ତୀର୍ଥ ଓ ଅନ୍ୟାନ୍ୟ ସାଧୁମଣ୍ଡଳୀଙ୍କ ଉପସ୍ଥିତିରେ ତଥା କ୍ରିୟାଯୋଗର ସାଧକଗଣଙ୍କ ଗହଣରେ ପୁରୀ କରାର ଆଶ୍ରମର ସଙ୍ଘପତି ରୂପରେ ସ୍ୱାମୀ ହରିହରାନନ୍ଦ ଗିରି ଅଭିଷିକ୍ତ ହୋଇଥିଲେ । ସେହି ଦିନଠୁ ସ୍ୱାମୀ ହରିହରାନନ୍ଦଜୀ ସାଧୁ ସଙ୍ଘପତି ଭାବରେ ସମଗ୍ର ବିଶ୍ୱର କ୍ରିୟାଯୋଗ ସାଧକ ଗଣଙ୍କ ସମ୍ମାନ ଓ ଶ୍ରଦ୍ଧାର ପାତ୍ର ହୋଇ ଆସିଛନ୍ତି ।

## ପରମହଂସ ଯୋଗାନନ୍ଦ ଓ ଭାରତ ବାହାରେ କ୍ରିୟାଯୋଗ:-

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବିବେକାନନ୍ଦ ବେଦାନ୍ତ ଦର୍ଶନର ଶଙ୍ଖଧ୍ୱନିରେ ସାରା ବିଶ୍ୱକୁ ଅଭିଭୂତ କରି ଦେଇଥିଲେ । ସେହିପରି ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପରମହଂସ ଯୋଗାନନ୍ଦ ଭାରତର ଯୋଗ-ଶକ୍ତି ଦ୍ୱାରା ବିଶ୍ୱବାସୀଙ୍କୁ ଚମକାଇ ଦେଇଥିଲେ । ବିବେକାନନ୍ଦଙ୍କ ବେଦାନ୍ତ ଦର୍ଶନ ବିଶ୍ୱ ଦରବାରରେ ଭାରତର ସମ୍ମାନ ପ୍ରତିଷ୍ଠା କରିଥିଲା । ପରମହଂସ ଯୋଗାନନ୍ଦଙ୍କ କ୍ରିୟାଯୋଗ ସେହିପରି ବିଶ୍ୱର ସତ୍ୟସନ୍ଧାନୀ ଅଧ୍ୟାତ୍ମ ଜନଗଣଙ୍କ ମଧ୍ୟରେ ଭାରତର ଯୋଗପ୍ରତି ଗଭୀର ଶ୍ରଦ୍ଧା ଆନୟନ କରିବା ସଙ୍ଗେ ପ୍ରେରଣା ଦାନ କରିଥିଲା ।

ପରମହଂସ ଯୋଗାନନ୍ଦ ୧୮୯୩ ମସିହା ଜାନୁଆରୀ ୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଭଗବତୀ ଚରଣ ଥିଲେ ଉଚ୍ଚପଦସ୍ଥ ରେଲୱେ ଅଫିସର । ତାଙ୍କ ମାତାଙ୍କ ନାମ ଥିଲା ଜ୍ଞାନପ୍ରଭା । ପରମହଂସ

ଯୋଗାନନ୍ଦଙ୍କ ପୂର୍ବ ନାମ ଥିଲା ମୁକୁନ୍ଦଲାଲ । ତାଙ୍କର ପିତା ଓ ମାତା ଥିଲେ ଯୋଗୀରାଜ ଶ୍ରୀ ଶ୍ରୀ ଶ୍ୟାମାଚରଣ ଲାହିଡ଼ୀଙ୍କର ଦୀକ୍ଷିତ ଶିଷ୍ୟ ଓ ଶିଷ୍ୟା । ଛଅ ମାସର ଶିଶୁ ମୁକୁନ୍ଦଙ୍କୁ ଜ୍ଞାନପ୍ରଭଙ୍କ କୋଳରେ ଦେଖି ସେ ଆଧ୍ୟାତ୍ମିକ ଜଗତର ପ୍ରବକ୍ତା ହେବେ ବୋଲି ଆଶୀର୍ବାଦ କରିଥିଲେ । ମୁକୁନ୍ଦ ଏଗାର ବର୍ଷ ବୟସରେ ମାତାଙ୍କୁ ହରାଇ ଥିଲେ । ମୁକୁନ୍ଦଲାଲ ଶୈଶ କାଳରୁ ହିଁ କ୍ରିୟାଯୋଗ ସହ ସଂଯୁକ୍ତ ହୋଇଯାଇଥିଲେ । ସେ ସର୍ବଦା ଧ୍ୟାନ ମଗ୍ନ ରହୁଥିଲେ । ପିଲାକାଳରୁ ସେ ବହୁ ଉଚ୍ଚାଙ୍ଗ ସାଧକଙ୍କ ସଂପର୍କରେ ଆସିଥିଲେ । ଶେଷରେ ସେ ସଦଗୁରୁ ଖୋଜି ଖୋଜି ଯୋଗୀ-ରାଜ ଶ୍ରୀ ଲାହିଡ଼ୀ ମହାଶୟଙ୍କ ପଟ୍ଟଶିଷ୍ୟ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସନ୍ଧାନ ପାଇଥିଲେ । ସେ ଶ୍ରୀଯୁକ୍ତେଶ୍ୱରଜୀଙ୍କଠାରୁ କ୍ରିୟାଯୋଗ ଦୀକ୍ଷା ଗ୍ରହଣ କରିଥିଲେ । ଏହି ସାକ୍ଷାତ୍କାର ଘଟିଥିଲା ୧୯୧୩ ଖ୍ରୀଷ୍ଟାବ୍ଦରେ । ଗୁରୁ ଶ୍ରୀଯୁକ୍ତେଶ୍ୱରଜୀଙ୍କ ନିର୍ଦ୍ଦେଶରେ ଚାରିମାସ ଅଧ୍ୟୟନ କରି ସେ ବି. ଏ. ପାସ କରି ପାରିଥିଲେ । ଏହାପରେ ମୁକୁନ୍ଦଲାଲଙ୍କୁ ସନ୍ନ୍ୟାସ ଦୀକ୍ଷା ଦାନ କରି ନାମକରଣ କରିଥିଲେ ସ୍ୱାମୀ ଯୋଗାନନ୍ଦ ଗିରି ।

ସନ୍ନ୍ୟାସୀ ହେବାପରେ ସ୍ୱାମୀ ଯୋଗାନନ୍ଦ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସତ-ସଙ୍ଗ ସଙ୍ଘ କାର୍ଯ୍ୟରେ ଆତ୍ମନିଯୋଗ କରିଥିଲେ । ୧୯୧୬ ଖ୍ରୀଷ୍ଟାବ୍ଦରେ ଯୋଗାନନ୍ଦ ଜାପାନ ଯାତ୍ରା କରିଥିଲେ । ୧୯୧୯ ଖ୍ରୀଷ୍ଟାବ୍ଦରେ କାଶିମ ବାଜାରର ମହାରାଜ ମଣୀନ୍ଦ୍ର ଚନ୍ଦ୍ର ନନ୍ଦୀଙ୍କ ପୃଷ୍ଠ ପୋଷକତାରେ ଏକ ବ୍ରହ୍ମଚର୍ଯ୍ୟ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ପରେ ଏହା ରାଞ୍ଚିକୁ ସ୍ଥାନାନ୍ତରିତ ହୋଇଥିଲା । ପରମହଂସ ଯୋଗାନନ୍ଦଙ୍କ ପ୍ରୟାସରେ ଏହି କ୍ରିୟାଯୋଗ ସମଗ୍ର ବିଶ୍ୱରେ ସଂପ୍ରସାରିତ ହୋଇଥିଲା । ପରମହଂସ ଯୋଗାନନ୍ଦଙ୍କର ଜୀବନର ଚରମ ଉଦ୍ଦେଶ୍ୟଥିଲା । ସମଗ୍ର ମାନବ ଜାତିକୁ ଏକ ଆଧ୍ୟାତ୍ମିକ

ଯୋଗସୂତ୍ରରେ ଆବଦ୍ଧ କରି ଈଶ୍ୱର ଭାବରେ ଉଦ୍‌ବୁଦ୍ଧ କରିବା ଓ ବିଶ୍ୱକୁ ଗୋଟିଏ ଆଧ୍ୟାତ୍ମିକ ନୀଡ଼ରେ ପରିଣତ କରିଦେବା । ତାଙ୍କ ଜୀବନ ବ୍ୟାପୀ ସାଧନା କ୍ରିୟାଯୋଗ ମାଧ୍ୟମରେ ତାଙ୍କର ତପଶ୍ଚର୍ଯ୍ୟାର ଚରମଫଳ ସେ ବିଶ୍ୱବ୍ୟାପୀଙ୍କୁ ଦେଇଯାଇଛନ୍ତି । ସେହି ଉଦ୍ଦେଶ୍ୟରେ ସାରା ଜୀବନ ବିଦେଶରେ କଟାଇଥିଲେ ।

ଯୋଗାନନ୍ଦ ଆମେରିକା ବୋଷ୍ଟନରେ ୧୯୨୦ ଅକ୍ଟୋବର ମାସରେ ଧର୍ମ ମହାସଭାରେ ଯୋଗଦାନ କରି କ୍ରିୟାଯୋଗ ସମ୍ପର୍କରେ ପ୍ରଥମ ଅଭି-ଭାଷଣ ପ୍ରଦାନ କରିଥିଲେ । କ୍ରମଶଃ ବହୁ ଆମେରିକା ବାସୀ କ୍ରିୟାଯୋଗ ଦ୍ୱାରା ଆକର୍ଷିତ ହୋଇଥିଲେ । ତେଣୁ ବିବେକାନନ୍ଦଙ୍କ ପରେ ପରମହଂସ ଯୋଗାନନ୍ଦ ଥିଲେ ଦ୍ୱିତୀୟ ଭାରତୀୟ ଯୋଗୀ ଆମେରିକାକୁ ଯେ ଆଧ୍ୟା-ତ୍ମିକତାର ମାର୍ଗ ପ୍ରଦର୍ଶନ କରିଯାଇଛନ୍ତି । ସ୍ୱାମୀ ଯୋଗାନନ୍ଦ ତାଙ୍କର ଭାରତ ପ୍ରତ୍ୟାବର୍ତ୍ତନ କାଳରେ ଶ୍ରୀରାମପୁର ଆଶ୍ରମରେ ଉତ୍ତରାୟଣ ସଂକ୍ରାନ୍ତି ଉପଲକ୍ଷେ ଅନୁଷ୍ଠିତ ମହୋତ୍ସବର ପରବର୍ତ୍ତୀ ଦିନ ଶ୍ରୀ ଯୁକ୍ତେଶ୍ୱରଜୀଙ୍କ ଦ୍ୱାରା ପରମହଂସ ଉପାଧିରେ ଭୂଷିତ ହୋଇଥିଲେ । ୧୯୨୫ ମସିହାରେ ଲସ ଏଞ୍ଜେଲସ ମାଉଣ୍ଟ ଓ୍ୱାସିଂଟନଠାରେ ଏକ ବିରାଟ ଆଶ୍ରମ ପ୍ରତିଷ୍ଠିତ ହେଲା । ଶ୍ରୀଯୁକ୍ତେଶ୍ୱରଜୀଙ୍କ ସାଧୁସଭା ଓ କରାର ଆଶ୍ରମର ଆଦର୍ଶରେ ପରମହଂସ ଯୋଗାନନ୍ଦ । ଯୋଗଦା ସତ୍‌ସଙ୍ଗ ସମାଜ ଓ ସେଲଫ ରିଅାଲାଇଜେସନ ଫେଲୋସିପ’ ପ୍ରତିଷ୍ଠା କରିଥିଲେ ! ଏହାର ଆନ୍ତର୍ଜାତିକ କେନ୍ଦ୍ର ଲସ ଏଓଲେସଠାରେ ପ୍ରତିଷ୍ଠିତ ହୋଇଥିଲା । ଭାରତରେ ତଥା ଭାରତ ବାହାରେ ବହୁ ଆଶ୍ରମ ପ୍ରତିଷ୍ଠା କରିଥିଲେ । ବିଶ୍ୱରେ ପ୍ରାୟ ସମସ୍ତ ଦେଶରେ ଏହାର କେନ୍ଦ୍ର ମଧ୍ୟ ସ୍ଥାପିତ ହୋଇ କ୍ରିୟାଯୋଗକୁ ବିଶ୍ୱବ୍ୟାପୀ ଆନ୍ଦୋଳନରେ ପରିଣତ କରିଥିଲା ।

ପରମହଂସ ଯୋଗାନନ୍ଦଙ୍କ 'ଯୋଗୀର ଆତ୍ମଜୀବନୀ' (Autobiography of a Yogi) ବିଶ୍ୱର ବହୁଭାଷାରେ ଅନୂଦିତ ହୋଇଛି ଏବଂ ଆମେରିକାର ବହୁ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ଭାବରେ ସ୍ୱୀକୃତ ହୋଇଛି । ପରମହଂସ୍ ଯୋଗାନନ୍ଦଙ୍କ ପ୍ରେରଣାରେ ପୃଥିବୀର ନାନା ସ୍ଥାନରେ ଚଉରଶିଟି ସତ୍‌ସଙ୍ଗ ଆଶ୍ରମ ଓ କେନ୍ଦ୍ର ସ୍ଥାପିତ ହୋଇଥିଲା । କେବଳ ଆମେରିକାରେ ଦୁଇଲକ୍ଷ ପଚାଶ ହଜାରଠାରୁ ବେଶି ଶିଷ୍ୟ ତାଙ୍କ ପ୍ରବର୍ତ୍ତିତ ଯୋଗଦା ପ୍ରଣାଳୀ ଶିକ୍ଷା କରୁଥିଲେ । ଏହା ତାଙ୍କ ଦ୍ୱାରା ବିଶେଷ ଭାବରେ ପାଶ୍ଚାତ୍ୟ ଦେଶପାଇଁ ପ୍ରସ୍ତୁତ କରଯାଇଥିଲା । ଯୋଗାନନ୍ଦଙ୍କ ଦ୍ୱାରା ଲସ ଏଞ୍ଜେଲସ ନଗରରେ ଆମେରିକାର ପ୍ରଧାନ କେନ୍ଦ୍ର ଆଶ୍ରମ ଓ ଆନ୍ତର୍ଜାତୀୟ କେନ୍ଦ୍ର ସ୍ଥାପିତ ହୋଇଥିଲା । ୧୯୫୦ ମସିହାରେ ଲସ୍ ଏଞ୍ଜେଲସର ପାସିଫିକ୍ ପାଲିସେଡ୍ ଲମ୍ବଠାରେ ପ୍ରତିଷ୍ଠିନ ଆଶ୍ରମ ଗାନ୍ଧିଜୀଙ୍କୁ ସ୍ମୃତି ଉଦ୍ଦେଶ୍ୟରେ ଉଦ୍‌ଘାଟିତ ହୋଇଥିଲା । ଏଠାରେ ଗାନ୍ଧିଜୀଙ୍କ ଚିତାଭସ୍ମ ସଂରକ୍ଷିତ ହୋଇଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ କ୍ଷେତ୍ର ଭାବରେ ତାଙ୍କ ଦ୍ୱାରା ଭାରତ ସଂସ୍କୃତି ଭବନ ପ୍ରତିଷ୍ଠିତ ହୋଇଥିଲା ।

ଯୋଗାନନ୍ଦ ଆମେରିକାରେ କ୍ରିୟାଯୋଗ ପ୍ରଚାର କାଳରେ ନିଜର ଅଭିଜ୍ଞତା ଫଳରେ କିଛି ପରିବର୍ତ୍ତନ କରିବାକୁ ଯଥାର୍ଥ ମନେ କରିଥିଲେ । ଜାପାନ ଯାତ୍ରାକାଳରେ ତାଙ୍କଠାରୁ ଦୀକ୍ଷାପ୍ରାପ୍ତ ଭାରତୀୟ ଇସଲାମ ଧର୍ମୀ କ୍ୟାପଟେନ ରସିଦ୍ ତାଙ୍କୁ ଏହି ପ୍ରସାର କାର୍ଯ୍ୟରେ ବିଶେଷ ଭାବରେ ସାହାଯ୍ୟ କରିଥିଲେ । ପରମହଂସ ଯୋଗାନନ୍ଦ ଲକ୍ଷ୍ୟ କଲେ ବିଶେଷ ଆଗ୍ରହ ଥିଲେ ମଧ୍ୟ ଅନେକ ଆମେରିକାବାସୀ ଭାରତୀୟ ମାନଙ୍କ ଭଳି ପଦ୍ମାସନ ବା ସାଧାରଣ ଆସନରେ ବସିବାକୁ ଅକ୍ଷମ । ତେଣୁ ତାଙ୍କ ଶରୀରକୁ ଯୋଗ ଉପଯୋଗୀ କରିବାକୁ କ୍ରିୟାଭ୍ୟାସ ପୂର୍ବରୁ 'ଯୋଗଦା-

ବ୍ୟାୟାମ୍'ର ପ୍ରଚଳନ କରିଥିଲେ । ଓଁକାର ଧ୍ୱନି ଶ୍ରବଣର ସହାୟକ ହେବାପାଇଁ ଏକ ଯନ୍ତ୍ର ମଧ୍ୟ ଉଦ୍‌ଭାବିତ ହୋଇଥିଲା ତାହାର ନାମ ଦିଆଗଲା ଶାନ୍ତିମନ୍ଦିର ( Temple of Silence ) । ଏହା ବ୍ୟତୀତ ସେ ଡ଼ାକଯୋଗେ ଯୋଗ ପ୍ରଣାଳୀ ସମ୍ପର୍କରେ ଅବହିତ ହେବା ପାଇଁ ଯୋଗଦା ପାଠ୍ୟକ୍ରମର ପ୍ରଚଳନ କରିଥିଲେ । ମାତ୍ର ଏହା ଯଥାର୍ଥ କ୍ରିୟାଯୋଗ ଶିକ୍ଷାପାଇଁ ଯେ ପଥପ୍ରସ୍ତୁତି ମାତ୍ର, ଏହା ସେ ଭଲ କରି ଜାଣିଥିଲେ । ଆମେରିକାର ବିଖ୍ୟାତ୍ ଧନୀ ବ୍ୟକ୍ତି ମିଃ ଲୀନ୍ ତାଙ୍କର ଅକୁଣ୍ଠ ସାହଚର୍ଯ୍ୟରେ ଆମେରିକାର କ୍ରିୟା ପ୍ରସାରକୁ ଦୃଢ଼ ଭିତ୍ତି ଦେଇଥିଲେ । ସେ ହୋଇଥିଲେ ରାଜର୍ଷି ଜନକାନନ୍ଦ ବାବାଜୀ ମହାମୁନୀଙ୍କ ଲାହିଡ଼ୀଙ୍କ ଭଳି ପରମହଂସ ଯୋଗାନନ୍ଦ ପାଶ୍ଚାତ୍ୟ ଜଗତ ପାଇଁ ବିତରଣ କରିଥିଲେ କ୍ରିୟାଯୋଗର ସନ୍ଦେଶ ।

ପରମହଂସ ଯୋଗାନନ୍ଦ ୧୯୧୮ ସାଲ ଜୁଲାଇ ମାସ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଠାରୁ ସନ୍ୟାସ ଗ୍ରହଣ କରିଥିଲେ । ବି. ଏ. ପାସ କରିବା ପରବର୍ତ୍ତୀ ବର୍ଷ ୧୯୨୦ ରେ ସେ ଆମେରିକା ଯାତ୍ରା କରିଥିଲେ । ପରମହଂସ ଯୋଗାନନ୍ଦଙ୍କ ଆତ୍ମ ଜୀବନୀରେ ବର୍ଣ୍ଣିତ ହୋଇଛି ଯେ ଶ୍ରୀଯୁକ୍ତେଶ୍ୱରଙ୍କ ଆଶ୍ରମ ମଧ୍ୟରେ ତାଙ୍କ ପ୍ରଥମ ଦିବ୍ୟାନୁଭୂତି ଗୁରୁକୃପାରୁ ଲାଭ ହୋଇଥିଲା । ପୁରୀ ଆଶ୍ରମର ବହୁ ସ୍ମୃତି ତାଙ୍କର ଆତ୍ମ ଜୀବନୀରେ ବର୍ଣ୍ଣିତ ହୋଇଛି । ଶ୍ରୀ ଯୁକ୍ତେଶ୍ୱରଜୀଙ୍କ ମହା ସମାଧିର ପ୍ରାକ୍‌କାଳରେ ଥରେ ମାତ୍ର ସେ ଭାରତ ପ୍ରତ୍ୟାବର୍ତ୍ତନ କରିଥିଲେ । କଡ଼ାର ଆଶ୍ରମରେ ଗୁରୁ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ମହାସମାଧି ଦେବା ପରେ ସେ ପୁଣି ଆମେରିକା ଚାଲିଯାଇ ସେଠାରେ ଆଜୀବନ ରହିଥିଲେ ।

ଶ୍ରୀଯୁକ୍ତେଶ୍ୱରଜୀ ପୁରୀରେ ମାର୍ଚ୍ଚ ମାସ ପୂର୍ଣ୍ଣିମାର ଦିନ ୧୯୩୬ ମସିହା ୯ ତାରିଖରେ ମହାସମାଧି ଗ୍ରହଣ କରିଥିଲେ । ସ୍ୱାମୀ ନାରାୟଣ ଗିରି ସେତେବେଳେ ତାଙ୍କ ନିକଟରେ ଉପସ୍ଥିତ ଥିଲେ । ସ୍ୱାମୀ ନାରାୟଣ ଗିରି ପ୍ରାୟ ୧୩ ବର୍ଷ କାଳ ଶ୍ରୀଯୁକ୍ତେଶ୍ୱରଜୀଙ୍କ ନିକଟରେ ଅବସ୍ଥାନ କରି ତାଙ୍କର ପରିଚର୍ଯ୍ୟା ଶେଷଦିନ ପର୍ଯ୍ୟନ୍ତ କରି ଆସିଥିଲେ । ସ୍ୱାମୀ ହରିହରାନନ୍ଦଙ୍କର ସେ ଥିଲେ ଜଣେ ମରମ ବନ୍ଧୁ । ମେଦିନାପୁରରେ ସ୍ୱାମୀ ନାରାୟଣ ଗିରି ଜନ୍ମ ଗ୍ରହଣ କରିଥିଲେ । ସ୍ୱାମୀ ହରିହରାନନ୍ଦଙ୍କ ମେଦିନାପୁରର ଉଷ୍ଣିଷ୍ଠିପୁରରେ ନିର୍ମିତ ଶ୍ରୀଯୁକ୍ତେଶ୍ୱର ଆଶ୍ରମରେ ସେ ଆଜୀବନ ନିର୍ଜନରେ ଅବସ୍ଥାନ କରୁଥିଲେ ଓ ପ୍ରତିବର୍ଷ କରାର ଆଶ୍ରମର ବାର୍ଷିକ ଉତ୍ସବ ମାର୍ଚ୍ଚ ୨୨ ତାରିଖରେ ମୃତ୍ୟୁର ପୂର୍ବକାଳ ପର୍ଯ୍ୟନ୍ତ ଯୋଗଦାନ କରିଥିଲେ । ପୁରୀଧାମରେ ଅକସ୍ମାତ୍ ହେଲ ୧୯୮୫ ରେ ତାଙ୍କର ଦେହାନ୍ତ ହୋଇଯାଇଛି । ୧୯୭୬ ମସିହାରୁ ୧୯୮୨ ମସିହା ପର୍ଯ୍ୟନ୍ତ ତାଙ୍କ ସହିତ ଏହି ଲେଖକର ସାକ୍ଷାତ ପ୍ରାୟ ପ୍ରତିବର୍ଷ ହୋଇଛି । ସ୍ୱାମୀଜୀ ଶ୍ରୀଯୁକ୍ତେଶ୍ୱରଜୀଙ୍କ ବହୁକଥା ମଝିରେ ମଝିରେ କହନ୍ତି । ସେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଭଳି ଗମ୍ଭୀର ପ୍ରକୃତିର ଲୋକ ଥିଲେ ।

ଶ୍ରୀଯୁକ୍ତେଶ୍ୱରଜୀଙ୍କ ପରେ ପରମହଂସ ଯୋଗାନନ୍ଦ ସାଧୁସଭାର ତଥା କରାର ଆଶ୍ରମର ସଭାପତି ହୋଇଥିଲେ । ମାତ୍ର ସେ ସେହି ବର୍ଷ ଆମେରିକା ଫେରିଯିବାରୁ ସ୍ୱାମୀ ସତ୍ୟାନନ୍ଦଜୀଙ୍କ ଉପରେ କରାର ଆଶ୍ରମର ଦାୟିତ୍ୱ ନ୍ୟସ୍ତ ହୋଇଥିଲ । ସ୍ୱାମୀ ସତ୍ୟାନନ୍ଦ ଗିରିଙ୍କ ତଥ୍ୟ ଅନୁସାରେ ଶ୍ରୀଯୁକ୍ତେଶ୍ୱରଜୀ ଭାରତରେ ତାଙ୍କ ଗୁରୁ ଶ୍ରୀଯୁକ୍ତେଶ୍ୱରଜୀଙ୍କ

ପ୍ରତିଷ୍ଠାନ ଠାରୁ ଭିନ୍ନ ସଂଗଠନ ଗ୍ରହିଁନଥିଲେ । ମାତ୍ର ପରମହଂସ ଯୋଗାନନ୍ଦ ଏକ ବିଶ୍ୱବ୍ୟାପୀ କ୍ରିୟାଯୋଗ ଆନ୍ଦୋଳନ କରିବାକୁ ଚାହିଁବାରୁ ଶେଷରେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ଏହା ସ୍ୱୀକାର କରିବାକୁ ପଡ଼ିଥିଲା । ମାତ୍ର ଦୂରଦୃଷ୍ଟି ସମ୍ପନ୍ନ ଶ୍ରୀଯୁକ୍ତେଶ୍ୱରଜୀ ଏହି ଆଶ୍ରମକୁ କେନ୍ଦ୍ରକରି ଅଶାନ୍ତି ସୃଷ୍ଟିହେବ ବୋଲି ମତ ଦେଇଥିଲେ । ତାହା ପରବର୍ତ୍ତୀ କାଳରେ ସତ୍ୟ ବୋଲି ପ୍ରମାଣିତ ହୋଇଥିଲା ।

ଭାରତର ଶ୍ରେଷ୍ଠ ଜନନାୟକ ମହାତ୍ମାଗାନ୍ଧୀ ୧୯୩୫ ସାଲରେ ଓ୍ୱାର୍ଦ୍ଧାରେ ପରମହଂସଜୀଙ୍କ ସଂସ୍ପର୍ଶରେ ଆସି ମୁଗ୍ଧ ହୋଇଥିଲେ ଓ ତାଙ୍କଠାରୁ କ୍ରିୟାଯୋଗ ଦୀକ୍ଷା ଗ୍ରହଣ କରିଥିଲେ । ଭାରତର ରାଷ୍ଟ୍ରଗୁରୁ ମହାତ୍ମାଗାନ୍ଧୀଙ୍କ ସହିତ ବିଶ୍ୱର ଶ୍ରେଷ୍ଠ ଆଧ୍ୟାତ୍ମିକ ଗୁରୁଙ୍କ ମହାମିଳନରେ ଭାରତରେ ସ୍ୱାଧୀନତାର ସୂର୍ଯ୍ୟୋଦୟ ହୋଇଥିଲା । ପରମହଂସ ଯୋଗାନନ୍ଦ ଯେ କୌଣସି ଅବସ୍ଥାରେ ସମାଧିସ୍ଥ ହୋଇ ପାରୁଥିଲେ । ସ୍ୱାମୀ ହରିହରାନନ୍ଦ ତାଙ୍କର ଏହି ଅବସ୍ଥା ପ୍ରତ୍ୟକ୍ଷ ଭାବରେ ଦେଖି ତାଙ୍କଠାରୁ ଉଚ୍ଚରେ କ୍ରିୟା ଶ୍ରୀଯୁକ୍ତେଶ୍ୱରଜୀଙ୍କ ନିର୍ଦ୍ଦେଶ ଅନୁସାରେ ଗ୍ରହଣ କରିଥିଲେ । ପରେ ସାଧନାରେ ସିଦ୍ଧିଲାଭ କରି ସ୍ୱାମୀ ହରିହରାନନ୍ଦ ମଧ୍ୟ ସେହି ଅବସ୍ଥାର ଅଧିକାରୀ ହୋଇ ପାରିଥିଲେ ।

ଜୁନ୍ ୧୯୪୮ ମସିହାଠାରୁ ପରମହଂସ ଯୋଗାନନ୍ଦ ଗଭୀର ସମାଧିସ୍ଥ ଅବସ୍ଥାରେ ଅଧିକାଂଶ ସମୟରେ ନିମଗ୍ନ ରହୁଥିଲେ । ତାଙ୍କ ଜୀବନରେ ବିଶେଷ ଉଦ୍ଦେଶ୍ୟଥିଲା ବିଶ୍ୱରେ କ୍ରିୟାଯୋଗ ସାଧନାର ମହତ୍ୱକୁ ପ୍ରତିଷ୍ଠା ପ୍ରଦାନ କରିବା । ତାହା ସେ ଜୀବନ କାଳ ମଧ୍ୟରେ ଶେଷ କରି ସାରିଥିଲେ କେବଳ ବିଶ୍ୱବାସୀଙ୍କର ଆତ୍ମ ଜାଗରଣ ପାଇଁ ପ୍ରୟାସ ମଧ୍ୟରେ

ତାଙ୍କର କର୍ମ ଜୀବନର ମହାନ୍ ଆଲେଖ୍ୟ ଅଙ୍କିତ ହୋଇ ନାହିଁ । ମୃତ୍ୟୁରେ ମଧ୍ୟ ସେ ରଖି ଯାଇଛନ୍ତି ମହାଜୀବନର ସାକ୍ଷ୍ୟ । ପରମହଂସ ଯୋଗାନନ୍ଦ ମାର୍ଚ୍ଚ ୭ ତାରିଖ ୧୯୫୨ ସାଲରେ ଆମେରିକା ଭାରତୀୟ ରାଷ୍ଟ୍ରଦୂତ ଶ୍ରୀଯୁକ୍ତ ବିନୟ ରଞ୍ଜନ ସେନ୍‌ଙ୍କ ସମ୍ବର୍ଦ୍ଧନା ସଭାରେ ବକ୍ତୃତା ଦେବାପାଇଁ ଆହୂତ ହୋଇଥିଲେ । ସେ ନିଜର କବିତା ଆବୃତ୍ତି କରିଥିଲେ—

My India, where Ganges, Wood
Himalayan Caves and men dream God
I am hallowed, my body touched that sod'

ଏହି କଥା କହୁ କହୁ ତାଙ୍କ ଦୃଷ୍ଟି କୂଟସ୍ଥରେ ନିବଦ୍ଧ ହୋଇଗଲା ଓ ସେ ସମାଧିସ୍ଥ ହୋଇ ପଡ଼ିଲେ । ଏହାହିଁ ଥିଲା ତାଙ୍କର ପୃଥିବୀରେ ଶେଷ ଅଭିନୟ । ସଙ୍ଗେ ସଙ୍ଗେ ପରମହଂସ ଯୋଗାନନ୍ଦଙ୍କ ପୁଣ୍ୟ ଦେହ ଲସ୍ ଏଞ୍ଜେଲସ୍ ଆଶ୍ରମକୁ ନିଆଗଲା ଏବଂ ତାଙ୍କ ଶରୀର ଫଂରେଷ୍ଟଲନ୍ ଏସୋସିଏସନ୍ ଶବାଗାରରେ ଗୋଟିଏ କକ୍ଷରେ ରଖାଗଲା । ଏହି ସମୟରେ ଏକ ଅଲୌକିକ ଘଟଣା ଘଟିଲା । ଏହା ମାନବର ମୃତ୍ୟୁର ଇତିହାସରେ ଏକାନ୍ତ ବିସ୍ମୟକର ଘଟଣା । ଶବାଗାରର ଡ୍ରାଇରେକ୍ଟର ମି: ହାରି: ଟି: ରେଙ୍କର ପତ୍ରରେ ଏହି ବିଷୟର ଉଲ୍ଲେଖ ଅଛି— "ପରମହଂସ ଯୋଗାନନ୍ଦଙ୍କ ଦେହ ତ୍ୟାଗ ଆମ ଅଭିଜ୍ଞତାରେ ଅଭୂତ ପୂର୍ବ, ଆଲୌକିକ ଓ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଜନକ ଘଟଣା । ପରମହଂସ ଯୋଗାନନ୍ଦଙ୍କର ମୃତ୍ୟୁର କିଂଶଦିନ ପରେ ମଧ୍ୟ ତାଙ୍କ ଦେହରେ କୌଣସି ବିକୃତିର ଚିହ୍ନ ଦେଖିବାକୁ ମିଳିନାହିଁ ।" ତାଙ୍କର ମରଶରୀର ଏକୋଇଶ ଦିନ ପର୍ଯ୍ୟନ୍ତ ସୁରକ୍ଷିତ ରହିଥିଲା ଓ ଅବିକୃତ ରହିଥିଲା । ଜୀବନ୍ତ ଭଳି ଶ୍ରୀମୁଖରେ ନିମତ ହେଉଥିଲା ଅପୂର୍ବ ଭଗବଦ୍

ଜ୍ୟୋତି । ମୃତ୍ୟୁରେ ମଧ୍ୟ ପରମହଂସ ଯୋଗାନନ୍ଦ ବିଶ୍ୱର ଜଣେ ଶ୍ରେଷ୍ଠ ସାଧକ ଭାବରେ କ୍ରିୟାଯୋଗର ମହତ୍ତ୍ୱକୁ ପ୍ରମାଣିତ କରିଗଲେ ।

ମହାଯୋଗୀ ପରମହଂସ ଯୋଗାନନ୍ଦ ଅସାଧାରଣ ଐଶୀଶକ୍ତିର ପ୍ରବାହରେ ବିଶ୍ୱର ଲକ୍ଷ ଲକ୍ଷ ବ୍ୟକ୍ତିକୁ ଅନୁପ୍ରାଣିତ କରିଯାଇଛନ୍ତି । ସେ କହିଥିଲେ "ପୃଥିବୀର ସକଳ ଜାତି ମଧ୍ୟରେ ଅଗ୍ରଜ ଭାରତ ବର୍ଷ କର୍ତ୍ତୃକ ସଞ୍ଚିତ ଜ୍ଞାନରେ ମଧ୍ୟ ସମଗ୍ର ମାନବ ଜାତିର ସମାନ ଉତ୍ତରାଧିକାର ।" ପରମହଂସ ଯୋଗାନନ୍ଦଙ୍କ ସାଧନାର ପ୍ରତିଭୂ ରୂପରେ ଯେଉଁ ବିମୁଖ ଆଧ୍ୟାତ୍ମିକ ସଂସାର ଛାଡ଼ିଯାଇଛନ୍ତି, ସ୍ୱାମୀ ହରିହରାନନ୍ଦ ସେହି ସେହି ପୃଥିବୀକୁ ବିସ୍ତୃତ ଓ ସଂପ୍ରସାରିତ କରିଛନ୍ତି, ସମଗ୍ର ବିଶ୍ୱରେ କ୍ରିୟାଯୋଗର ମାର୍ଗଦର୍ଶନ ଦେଇ ପରମହଂସ ଯୋଗାନନ୍ଦଜୀଙ୍କ ସ୍ୱପ୍ନକୁ ସାର୍ଥକ କରିଛନ୍ତି ।

## ସ୍ୱାମୀ ହରିହରାନନ୍ଦ : କ୍ରିୟାଯୋଗର ବିଶ୍ୱବ୍ୟାପି ପ୍ରସାର

ସ୍ୱାମୀ ହରିହରାନନ୍ଦ କ୍ରିୟାଯୋଗର ମହାନ୍ ଗୁରୁ ଭାବରେ ସମଗ୍ର ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛନ୍ତି । ପରମହଂସ ଯୋଗାନନ୍ଦ ଭଳି ତାଙ୍କର ଜୀବନ ବୈଚିତ୍ର୍ୟପୂର୍ଣ୍ଣ, ଶ୍ରୀଯୁକ୍ତେଶ୍ୱରଜୀଙ୍କ ଭଳି ଏକ ଗଭୀର ଆଧ୍ୟାତ୍ମିକତାରେ ପରିପୂର୍ଣ୍ଣ ଜୀବନ ଅତିବାହିତ କରିଥିଲେ ମଧ୍ୟ ପ୍ରଚାର ବିମୁଖତା କାରଣରୁ ତାଙ୍କ ଜୀବନର ସମସ୍ତ ତଥ୍ୟ ଏବେ ମଧ୍ୟ ସୁସ୍ପଷ୍ଟ ହୋଇପାରିନାହିଁ । ୧୯୬୫ ମସିହାରୁ ତାଙ୍କର ସଂସ୍ପର୍ଶରେ ଆସି ଯେଉଁ କିଞ୍ଚିତ ବିବରଣ ଏପର୍ଯ୍ୟନ୍ତ ସଂଗ୍ରହ କରିବାକୁ ସକ୍ଷମ ହୋଇଛି, ତାହାର ସଂକ୍ଷିପ୍ତ ଚିତ୍ର ପ୍ରକାଶ କରୁଛି । ମୋର ପରମ ସୌଭାଗ୍ୟ ଯେ ଏପରି ଜଣେ ଦୂରଦର୍ଶୀ ମନୀଷଙ୍କ ସଂପର୍କରେ ଆସିବାର ସୁଯୋଗ ପାଇଛି, ନିକଟତମ ଭାବରେ ତାଙ୍କର ସ୍ୱାଭାବିକ

ଜୀବନର ଧାରାକୁ ଲକ୍ଷ୍ୟ କରିଛି, ସାଧନା ପଦ୍ଧତି ସହ ପରିଚିତ ହୋଇ ଆସିଛି । ସେ କରୁଣା କରି ତାଙ୍କର ସାଧନା ଦର୍ଶନ ପଦ୍ଧତି ସମ୍ପର୍କରେ ଘଣ୍ଟା ଘଣ୍ଟାଧରି ଯେଉଁ ବାଣୀ ପ୍ରଦାନ କରିଛନ୍ତି, ତାହା ଲିପିବଦ୍ଧ କରିବାର ପରମ ସୌଭାଗ୍ୟ ମୋତେ ମିଳିଛି । ତାଙ୍କ ସହ ଏହି ସମ୍ପର୍କ, ପତ୍ରାଦି କଥା ଜୀବନର ବିଚିତ୍ର ଆଲେଖ୍ୟ ଦେବାପାଇଁ ଏକ ସ୍ୱତନ୍ତ୍ର ପ୍ରୟାସ ଲୋଡା ; ଏଠାରେ ତାଙ୍କ ଜୀବନର ସାମଗ୍ରିକ ଚିତ୍ର କେବଳ ଦିଆଯାଉଛି ।

କ୍ରିୟାଯୋଗ ପରମ୍ପରାର ମହାନ୍ ଆଚାର୍ଯ୍ୟ ବିଶ୍ୱଗୁରୁ ସ୍ୱାମୀ ହରିହରାନନ୍ଦ ଗିରି ପଶ୍ଚିମ ବଙ୍ଗଳାର ଚୈତନ୍ୟ ମହାପ୍ରଭୁଙ୍କ ଜନ୍ମଭୂମି ନଦିଆ ଅନ୍ତର୍ଗତ ହବିବ୍‌ପୁରରେ ମେ ୨୭ ତାରିଖରେ ୧୯୦୮ ଖ୍ରୀଷ୍ଟାବ୍ଦରେ ଆବିର୍ଭୂତ ହୋଇଥିଲେ । ଏକ ନୈଷ୍ଠିକ ଧନୀ ଓ ସମ୍ବୃଦ୍ଧି ସମ୍ପନ୍ନ ବ୍ରାହ୍ମଣ ପରିବାରରେ ଜନ୍ମହୋଇ ଏହି ମହାପୁରୁଷ ଶିଶୁକାଳରୁ ଏପରିକି ଚାରିବର୍ଷ ବୟସରୁ ମଧ୍ୟ ଆଶ୍ଚର୍ଯ୍ୟ ଧୀଶକ୍ତିର ପରିଚୟ ଦେଇଥିଲେ । ତାଙ୍କର ପିତା ଶ୍ରୀ ହରିପଦ ଭଟ୍ଟାଚାର୍ଯ୍ୟଙ୍କଠାରୁ ସେ ସମସ୍ତ ପୂଜାମନ୍ତ୍ର ଶୁଣି ଶୁଣି ମନେ ରଖିଥିଲେ । ତାଙ୍କର ପିତା ମଧ୍ୟ ହିନ୍ଦୁଶାସ୍ତ୍ରରେ ଜଣେ ଧୂରୀଣ ପଣ୍ଡିତ ଥିଲେ ଏବଂ ମାତା ଅତ୍ୟନ୍ତ ଧର୍ମ ପରାୟଣା ଥିଲେ ।

ଏଗାର ବର୍ଷ ବୟସ ବେଳେ ତାଙ୍କର ବ୍ରହ୍ମଚର୍ଯ୍ୟ ଓ ଉପନୟନ ବିଧି ସମାହିତ ହୋଇଥିଲା ବାର ବର୍ଷ ବୟସ ବେଳେ ହାଓଡ଼ାର ଜଣେ ଗୃହୀ ଆମଲାନୀ ବିଶିଷ୍ଟ ସାଧକ ଶ୍ରୀ ବିଜୟକୃଷ୍ଣ ଚଟ୍ଟୋପାଧ୍ୟାୟଙ୍କଠାରୁ ସେ ଜ୍ଞାନ ଯୋଗରେ ଦୀକ୍ଷିତ ହୋଇଥିଲେ । ଏହି ସାଧକ ତାଙ୍କୁ ଜ୍ଞାନାବତାର ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ସାକ୍ଷାତ କରିବା ପାଇଁ ପ୍ରେରଣା ଦେଇଥିଲେ । ଏହି ସାଧକ ଶ୍ରୀଯୁକ୍ତେଶ୍ୱରଜୀଙ୍କର ଜଣେ ଉଚ୍ଚାଙ୍ଗ କ୍ରିୟାବାନ ଶିଷ୍ୟ ଥିଲେ ଓ

ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କୁ ଦୀକ୍ଷା ଦେବାର ଅଧିକାର ଦେଇଥିଲେ । ହାଓଡ଼ାର ବହୁ ବ୍ୟକ୍ତି ତାଙ୍କଠାରୁ ସାଧନା ଗ୍ରହଣ କରିଥିଲେ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ୧୯୩୫ ଓ ୧୯୩୬ ମସିହାରେ ଯେଉଁମାନଙ୍କ କ୍ରିୟା ଦୀକ୍ଷା ଦେଇଥିଲେ ସେମାନେ ଖେଚରୀ ମୁଦ୍ରା ସମ୍ପର୍କରେ ଅଭିଜ୍ଞ ନଥିଲେ । ସେମାନେ ବିଜୟ କୃଷ୍ଣଙ୍କ ଠାରୁ ତାହା ଶିକ୍ଷା କରିଥିଲେ । ସ୍ୱାମୀ ହରିହରାନନ୍ଦ ପିଲାକାଳରୁ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସାଧନା ଶିକ୍ଷା କରିଥିଲେ । ସେତେବେଳେ ତାଙ୍କ ନାମ ଥିଲା ଶ୍ରୀ ରବୀନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ ।

୧୯୩୨ ମସିହାରେ ସେ ଶ୍ରୀରାମପୁର ଆଶ୍ରମରେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ସାକ୍ଷାତ କରି ତାଙ୍କଠାରୁ କ୍ରିୟାଯୋଗ ଦୀକ୍ଷା ଲାଭ କରିଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କ ସହିତ ସାକ୍ଷାତକାରର ବିବରଣ ସ୍ୱାମୀଜୀଙ୍କ କ୍ରିୟାଯୋଗ ସାଧନତତ୍ତ୍ୱ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି । ଶ୍ରୀ ରବୀନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟଙ୍କ ଶାସ୍ତ୍ର ଜ୍ଞାନ, ଜ୍ୟୋତିଷ ଜ୍ଞାନ ଓ ବ୍ରାହ୍ମଣ ଶରୀର ଦେଖି ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କୁ ପୁରୀ ଆଶ୍ରମ ପୀଠରେ ପ୍ରତିଷ୍ଠିତ କରିବେ ବୋଲି ଚିନ୍ତା କରିଥିଲେ । ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କ ସମ୍ପର୍କରେ ଭବିଷ୍ୟତ ବାଣୀ କରିଥିଲେ ଯେ ରବୀନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟଙ୍କର ସନ୍ୟାସ ଯୋଗ ଅଛି ୧୯୩୪ ମସିହାରେ ଶ୍ରୀରାମପୁର ଆଶ୍ରମରେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସହ ସାକ୍ଷାତ ଆଲୋଚନା ବେଳେ ତାଙ୍କୁ ପୁରୀ ଆଶ୍ରମରେ ରହି ତାଙ୍କର ସକଳ କାର୍ଯ୍ୟ ନିୟନ୍ତ୍ରଣ କରିବାକୁ ଅନୁରୋଧ କରିଥିଲେ । ୧୯୩୬ ସାଲ ମାର୍ଚ୍ଚ ୯ ତାରିଖରେ ଶ୍ରୀଯୁକ୍ତେଶ୍ୱରଜୀଙ୍କର ଦେହାନ୍ତ ହୋଇଥିଲା । ୧୯୩୮ ସାଲରେ ଶ୍ରୀ ରବୀନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ ଏକ ଭଡ଼ାଘରେ ରହିଥିଲେ । ସେ ଘରକୁ ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କର ଜଣେ ବନ୍ଧୁକୁ ଦେଖାଇ ଦେଇଥିଲେ, ସେତେ-

ବେଳେ ତାଙ୍କର ଦେହାନ୍ତ ହୋଇ ଯାଇଥିବା କଥା ବନ୍ଧୁଟି ଜାଣି ନଥିଲେ । ପରେ ଆଶ୍ରମ ପଥରେ ଯିବାବେଳେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ମଧ୍ୟ ସେ ୧୯୩୮ ସାଲ ଶେଷ ଭାଗରେ ପ୍ରତ୍ୟକ୍ଷ ଭାବରେ ଦର୍ଶନ କରିଥିଲେ । ସେହି ରାତ୍ରରେ ସେ ତାଙ୍କୁ ସ୍ୱପ୍ନରେ କଡ଼ାର ଆଶ୍ରମରେ ବାସ କରିବାକୁ ନିର୍ଦ୍ଦେଶ ଦେଇ-ଥିଲେ । ସ୍ୱାମିଜୀ ଆଶ୍ରମରେ ରହିବା ପରେ ଯେପରି ଶ୍ରୀଯୁକ୍ତେଶ୍ୱରଜୀଙ୍କ ଅମର ଆତ୍ମା ତୃପ୍ତ ହୋଇଥିଲା । କାରଣ ତାହାପରେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ଆଉ କେହି ଦେଖି ନଥିଲେ । ସ୍ୱାମିଜୀ ଜ୍ୟୋତିଷ ଜ୍ୟୋତିର୍ବିଜ୍ଞାନ ଓ ସାମୁଦ୍ରିକ ବିଦ୍ୟା ଶ୍ରୀଯୁକ୍ତେଶ୍ୱରଜୀଙ୍କ ଠାରୁ ଶିକ୍ଷା ଲାଭ କରିଥିଲେ ଓ ପ୍ରଥମ କ୍ରିୟାର ଅବସ୍ଥା ମଧ୍ୟ ଅତିକ୍ରମ କରିଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ପ୍ରତିଶ୍ରୁତି ଦେଇଥିବାରୁ କଡ଼ାର ଆଶ୍ରମରେ ସେ ଆଜୀବନ ରହିବାକୁ ସ୍ଥିର କରି ଆଶ୍ରମରେ ଅସି ଗଭୀର ସାଧନାରେ ନିମଗ୍ନ ରହିଥିଲେ । ସେ ସେଠାରେ ବ୍ରହ୍ମଚାରୀ ରବିନାରାୟଣ ନାମରେ ସୁପରିଚିତ ଥିଲେ ।

୧୯୩୫ ସାଲରେ ପରମହଂସ ଯୋଗାନନ୍ଦ ଆମେରିକାରୁ ଭାରତ ଫେରିଥିଲେ । ପରମହଂସ ଯୋଗାନନ୍ଦ ଯେ କୌଣସି ମୁହୂର୍ତ୍ତରେ ସମାଧି ଅବସ୍ଥା ଲାଭ କରି ପାରନ୍ତି - ଏହା ଶୁଣି ସେ ତାଙ୍କୁ କଲିକତାରେ ସାକ୍ଷାତ କରିଥିଲେ । ପରମହଂସଜୀ ତାଙ୍କର ସୌମ୍ୟ ସାଧକ ଶରୀର ଲକ୍ଷ୍ୟକରି ବହୁଜନ ମେଳରେ ତାଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଡ଼ାକିଥିଲେ । ସ୍ୱାମିଜୀ ତାଙ୍କୁ ପ୍ରଣାମ କରି ପରମହଂସ ଯୋଗାନନ୍ଦଙ୍କ ସମାଧି ଅବସ୍ଥା ଦର୍ଶନ କରି-ବାର ଆଗ୍ରହ ପ୍ରକାଶ କଲେ । ପରମହଂସ ଯୋଗାନନ୍ଦ କହିଥିଲେ ଖାଲି ଦେଖିଲେ ଏହି ଶକ୍ତି ଲାଭ ହେବ ନାହିଁ ଜୀବନ ମଧ୍ୟ ଧନ୍ୟ ହେବ ନାହିଁ । ସ୍ୱାମିଜୀ ଉତ୍ତର ଦେଲେ– ଆପଣଙ୍କ ସାଧନାଶକ୍ତି ଦେଖିଲେ ମୋର ସାଧନା ସମ୍ପର୍କରେ ହୃଦ୍‌ବୋଧ ହେବ । ତାହା ଦେଖି ସେହି ଶକ୍ତି ଲାଭ

ପାଇଁ ମୁଁ ଆପଣଙ୍କଠାରୁ ଉଚ୍ଚସ୍ତରର କ୍ରିୟା ଗ୍ରହଣ କରିବି । ଶ୍ରୀଯୁକ୍ତେଶ୍ୱରଜୀଙ୍କ ପ୍ରତ୍ୟକ୍ଷ ଦିଗ୍ ଦର୍ଶନରେ ମୁଁ ପ୍ରଥମ କ୍ରିୟା ଦୀର୍ଘକାଳ ଧରି କରି ଆସୁଛି । ପରମହଂସଜୀ ପଚାରିଲେ ତୁମେ କେତେ ଘଣ୍ଟା ସାଧନା କରିବ ? ସ୍ୱାମିଜୀ ଉତ୍ତର ଦେଇଥିଲେ– ଘଣ୍ଟା, ଦିନ ବର୍ଷର କଥା ନୁହେଁ । ଏଭଳି ମହାଶକ୍ତିର ସ୍ପର୍ଶ ପାଇଲେ ମୁଁ ମୋର ଜୀବନ ଆପଣଙ୍କ ଶ୍ରୀପାଦପଦ୍ମରେ ଅର୍ପଣ କରି ବର୍ଷ ବର୍ଷ ଧରି ସାଧନାରେ ନିମଗ୍ନ ରହି ଆପଣଙ୍କ କାର୍ଯ୍ୟରେ ନିୟୋଜିତ ରହିବାକୁ ସଙ୍କଳ୍ପ କରିଛି ।

ସ୍ୱାମିଜୀଙ୍କ କଥା ଶୁଣି ପରମହଂସ ଯୋଗାନନ୍ଦ ସନ୍ତୋଷ ଲାଭକରି ତାଙ୍କ ସହ ପୃଥକ ଭବନରେ ବସି ତାଙ୍କର ସମାଧି ଅବସ୍ଥା ପ୍ରଦର୍ଶନ କରାଇ ଥିଲେ । ସ୍ୱାମୀ ହରିହରାନନ୍ଦ ପରମହଂସଜୀଙ୍କ ନାଡ଼ି ଚଳଚ୍ଚ ହୀନ ଓ ସ୍ପନ୍ଦନହୀନ ଶରୀର ଦର୍ଶନ କରି ଅଭିଭୂତ ହୋଇ ଯାଇଥିଲେ । ସେ ଦେଖିଲେ ପରମହଂସଙ୍କ ଶରୀର ଏକ ଦିବ୍ୟ ଆଭାରେ ଉଦଭାସିତ ହେଉଛି । ଅଧ ଘଣ୍ଟାକ ପରେ ସ୍ୱାଭାବିକ ଅବସ୍ଥା ଫେରି ଆସିଥିଲା । ସ୍ୱାମିଜୀ ତାଙ୍କୁ ଭକ୍ତି ବିହ୍ୱଳ ଚିତ୍ତରେ ପ୍ରଣାମ କରି ଦୀକ୍ଷା ପ୍ରଦାନ କରିବାକୁ ଅନୁରୋଧ କରିଥିଲେ । ଦୀକ୍ଷା ଉପକରଣ ସଂପର୍କରେ ପଚାରିବାରୁ ପରମହଂସ ଯୋଗାନନ୍ଦ କହିଲେ – ତମର ହୃଦୟର ପରିପୂର୍ଣ୍ଣ ଶ୍ରଦ୍ଧା ହିଁ ଗୁରୁଦକ୍ଷିଣା ହେବ । ପରଦିନ ଦ୍ୱିତୀୟ କ୍ରିୟା ଦୀକ୍ଷା ଦାନ କରିଥିଲେ । ପରମହଂସଜୀଙ୍କ ଅତିମାନବ ସ୍ପର୍ଶରେ ହରିହରାନନ୍ଦଙ୍କ ମଧ୍ୟରେ ଅଲୌକିକ ସ୍ପନ୍ଦନ ଓ ଆନନ୍ଦର ଅନୁଭୂତି ସଂଚାରିତ ହୋଇଥିଲା । ତାଙ୍କ ମଥାରେ ସ୍ପର୍ଶ କରି ପରମହଂସଜୀ ସ୍ୱାମିଜୀଙ୍କୁ କହିଥିଲେ ସାଧନା ଦ୍ୱାରା ତାଙ୍କ ମଧ୍ୟରେ ମହାଶକ୍ତିକୁ ଜାଗ୍ରତ କଲେ ଅତି ଅଳ୍ପକାଳ ମଧ୍ୟରେ ସେ ନିଶ୍ଚୟ ଅତିମାନବତ୍ୱ ଓ ମହାମାନବତ୍ୱ ଲାଭ କରିପାରିବେ ।

## କଡାର ଆଶ୍ରମର ସାଧନ ପୀଠ-

ଶ୍ରୀଯୁକ୍ତେଶ୍ୱରଜୀ ୧୮୯୪ ସାଲରେ ଗୁରୁ ଲହିଡ଼ୀ ମହାଶୟଙ୍କ ଗୁରୁଙ୍କ ଆହ୍ଲାବାଦ କୁମ୍ଭମେଳାରେ ସାକ୍ଷାତ କରିଥିଲେ । ଏହି ମେଳାରେ ମହାମୁନୀ ବାବାଜୀ ତାଙ୍କୁ କହିଥିଲେ ଯେ ଶ୍ରୀଯୁକ୍ତେଶ୍ୱରଜୀ ପଶ୍ଚିମ ପ୍ରତି ଆଗ୍ରହୀ ଜାଣି ତାଙ୍କୁ ସେ ଡ଼କାଇଛନ୍ତି । ପୂର୍ବ ଓ ପଶ୍ଚିମର ସମନ୍ୱୟରେ, ଆଧ୍ୟାତ୍ମିକତା ଓ କର୍ମ ପ୍ରବଣତାର ସମନ୍ୱୟରେ ବିଶ୍ୱରେ ମଙ୍ଗଳ ସାଧନା ସମ୍ଭବ । ସେଥିପାଇଁ କିଛି କାଳ ପରେ ସେ ଜଣେ ଶିଷ୍ୟଙ୍କୁ ପଠାଇବେ ଯେ ହେବେ ଏହି ମହାନ୍ କାର୍ଯ୍ୟର ପ୍ରବର୍ତ୍ତକ । ଶ୍ରୀଯୁକ୍ତେଶ୍ୱରଜୀ ୧୯୧୦ ଖ୍ରୀଷ୍ଟାବ୍ଦରେ ସେହି ଶିଷ୍ୟ ମୁକୁନ୍ଦଲାଲ ଘୋଷଙ୍କୁ ପାଇଥିଲେ । ସେହି ପରବର୍ତ୍ତୀ କାଳରେ ପରମହଂସ ଯୋଗାନନ୍ଦ ନାମରେ ବିଶ୍ୱ ବିଶ୍ରୁତ ହୋଇ-ଥିଲେ । ପରମହଂସ ଯୋଗାନନ୍ଦ ଥିଲେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଶ୍ରେଷ୍ଠ ଶିଷ୍ୟ । କଡାର ଆଶ୍ରମରେ ଯେଉଁ ଯୋଗାନନ୍ଦ ବହୁକାଳ ଧରି ଶ୍ରୀଯୁକ୍ତେଶ୍ୱରଜୀଙ୍କ ପ୍ରତ୍ୟକ୍ଷ ଦିଗ୍ ଦର୍ଶନରେ ଧ୍ୟାନ ସାଧନାରେ ମଗ୍ନ ରହିଥିଲେ, ତାହାର ଭବିଷ୍ୟତ ପାଇଁ ଶ୍ରୀଯୁକ୍ତେଶ୍ୱରଜୀ ଗଭୀର ଚିନ୍ତା କରିଥିଲେ ।

ପରମହଂସ ଯୋଗାନନ୍ଦ 'ଯୋଗୀର ଆତ୍ମଜୀବନୀ' ଇଂରାଜୀ ଗ୍ରନ୍ଥରେ ସମୁଦ୍ର କୂଳର ପୁରୀ କଡାର ଆଶ୍ରମର ସ୍ମୃତି କଥାର ଉଲ୍ଲେଖ ଅଛି । ଫୁଲକୋବି ଚୋରିର କୌତୁହଳ ପ୍ରଦ ଘଟଣା ଏହି ଆଶ୍ରମରେ ଘଟିଥିଲା । ଏହି ଆଶ୍ରମରେ ମାର୍ଚ୍ଚ ୯ ତାରିଖ, ୧୯୩୬ ସନ୍ଧ୍ୟା ୭ ଟା ସମୟରେ ଶ୍ରୀଯୁକ୍ତେଶ୍ୱରଜୀ ମୋକ୍ଷ କ୍ଷେତ୍ର ପୁରୀ ଧାମରେ ସଚେତନ ଭାବରେ ମହା ସମାଧି ଲାଭ କରିଥିଲେ । ପରମହଂସ ଯୋଗାନନ୍ଦ ପୁରୀ ଫେରୀ ଆସି ୧୦ ତାରିଖ ଦିନ ମହାଯୋଗୀଙ୍କ ଶରୀରକୁ ଆଶ୍ରମ ଉଦ୍ୟାନ ମଧ୍ୟରେ

ସମାଧି ନେଇଥିଲେ । ମାର୍ଚ୍ଚ ୨୬ ତାରିଖ ମହାବିଷୁବ ସଂକ୍ରମଣ ତିଥିକୁ ମହିମା ମଣ୍ଡିତ କରିବା ପାଇଁ ୮୧ ବର୍ଷର ମହାନ ଜ୍ଞାନବତାର ଆଉ ନଥିଲେ । ମାତ୍ର ମହାସମାଧି ପୂର୍ବ ତାଙ୍କ ପ୍ରତିଷ୍ଠିତ ସାଧୁସଭାର ସଭାପତି ଭାବରେ ପରମହଂସ ଯୋଗାନନ୍ଦଙ୍କୁ ମନୋନୀତ କରିଯାଇଥିଲେ ।

ଶ୍ରୀଯୁକ୍ତେଶ୍ୱରଜୀ ସର୍ବଧର୍ମ ସମନ୍ୱୟରେ ବିଶ୍ୱାସ କରିଥିଲେ । ତେଣୁ ସେ ସାଧୁସଭା ନାମରେ ଏକ ପ୍ରତିଷ୍ଠାନ ଗଢ଼ିଥିଲେ । ସେହି ସଭା ସାଧୁ-ମଣ୍ଡଳର କାର୍ଯ୍ୟକରୀ ସମିତି ଭାବରେ ପରିଚିତ ଥିଲା । ଏବଂ ଶ୍ରୀଯୁକ୍ତେ-ଶ୍ୱରଜୀ ସାଧୁ ସଭାପତି ଭାବରେ କାର୍ଯ୍ୟ କରୁଥିଲେ । କଡ଼ାର ଆଶ୍ରମ ଥିଲା ଏହି ସାଧୁସଭାର କେନ୍ଦ୍ର । କଡ଼ାର ଆଶ୍ରମର ସୁପରିଚାଳନା ପାଇଁ ଏହା ବିଶେଷ ଭାବରେ ପ୍ରତିଷ୍ଠିତ ହୋଇଥିଲା । ସେତେବେଳେ ଯେଉଁ ସାଧୁ-ମଣ୍ଡଳ ପ୍ରତିଷ୍ଠାନ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ପୁରୀ ଗୋବର୍ଦ୍ଧନ ମଠର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଥିଲେ ଏହାର ମଣ୍ଡଳାଧିପତି । ସନାତନ ଧର୍ମ ପ୍ରସାର ପାଇଁ ଏହା ଉଦ୍ଦିଷ୍ଟ ଥିଲା । ଏହାର କାର୍ଯ୍ୟକାରୀ କମିଟିର ସଭାପତି ହିଁ ସାଧୁ ସଭାପତି ଭାବରେ ସମ୍ମାନିତ ହୋଇଥିଲେ । ଶ୍ରୀଯୁକ୍ତେଶ୍ୱର ଗିରି ଥିଲେ ଏହାର ପ୍ରତିଷ୍ଠାତା ପ୍ରଥମ ସାଧୁସଭାପତି । ସେହି କାଳରୁ ଶ୍ରୀଯୁକ୍ତେଶ୍ୱରଜୀ ସାଧୁସଭାପତି ଭାବରେ ପରିଚିତ ଥିଲେ । ଏହି ସାଧୁ ସଙ୍ଘର ଆନୁକୂଲ୍ୟରେ ବିଭିନ୍ନ ସ୍ଥାନରେ କେନ୍ଦ୍ର ସ୍ଥାପିତ ହେବାପାଇଁ ପ୍ରୟାସ କରଯାଇଥିଲା । ଶ୍ରୀରାମପୁରର ଶ୍ରୀଯୁକ୍ତେଶ୍ୱରଜୀଙ୍କ ଗୃହ ପ୍ରିୟଧାମରେ ମଧ୍ୟ ଏକ କେନ୍ଦ୍ର ସ୍ଥାପିତ ହୋଇଥିଲା । ପରେ କିଦିରପୁର ବେନାରସ ହେମାଇପୁର, କାନପୁର ଠାରେ ଏହାର ଶାଖା ପ୍ରସାରିତ ହୋଇଥିଲା । ଏହି ଆଦର୍ଶର ପୂର୍ତ୍ତି ପାଇଁ ପୁରୀ କଡ଼ାର ଆଶ୍ରମ ବିଶେଷତଃ ବ୍ରହ୍ମଚାରୀ ମାନଙ୍କୁ ପ୍ରସ୍ତୁତ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ବେନାରସ୍‌ରେ ପ୍ରଣବ ଆଶ୍ରମ

ଯୋଗାବତାର ଲହିଡ଼ି ମହାଶୟଙ୍କ ଉନ୍ନତ ଶିଷ୍ୟ ପ୍ରଣବାନନ୍ଦଙ୍କ ସହ-ଯୋଗରେ ଜନମଙ୍ଗଳ ପାଇଁ ଉଦ୍ଦିଷ୍ଟ ଥିଲା । ଏହାଛଡା ହିମାଳୟର ଋଷି-କେଶର ମୁଣ୍ଡଧାରଠାରେ ସିଦ୍ଧାଶ୍ରମ ପ୍ରତିଷ୍ଠା କରି ବାନପ୍ରସ୍ଥ ସାଧକମାନଙ୍କ ଗଭୀର ଧ୍ୟାନ ପାଇଁ ଉଦ୍ଦିଷ୍ଟ ହୋଇଥିଲା । କଡ଼ାର ଆଶ୍ରମର ପ୍ରତିଷ୍ଠାତା ଭାବରେ ଶ୍ରୀଯୁକ୍ତେଶ୍ୱରଜୀ କଡ଼ାର ସ୍ୱାମୀ ଭାବରେ ପରିଚିତ ଥିଲେ । ସେ ଯେଉଁ ସତ୍‌ସଙ୍ଗ ସଭା ଆରମ୍ଭ କରିଥିଲେ ପରମହଂସ ଯୋଗାନନ୍ଦ ତାହାକୁ ପରେ ଯୋଗଦା ସତ୍‌ସଙ୍ଗ ସଭାନାମରେ ଗ୍ରହଣ କରି ନେଇଥିଲେ । କଡ଼ାର ଆଶ୍ରମର ସ୍ଥାୟୀ କର୍ମପ୍ରବାହ ପାଇଁ ୧୯୨୧ ସେପ୍‌ଟେମ୍ବର ୩ ତାରିଖରେ ଟ୍ରଷ୍ଟଡ଼ିଡ ରେଜିଷ୍ଟ୍ରେସନ କରଯାଇଥିଲା । ବୈଦିକ ଶିକ୍ଷା, ଜ୍ୟୋତିଷ, ଜ୍ୟୋତିବିଜ୍ଞାନ ଆଧ୍ୟାତ୍ମିକ ଶିକ୍ଷା ପ୍ରଦାନ ପାଇଁ ଏଥିରେ କାର୍ଯ୍ୟ କରିବାକୁ ନୀତି ଭାବରେ ଗ୍ରହଣ କରଯାଇଥିଲା ।

ପରମହଂସ ଯୋଗାନନ୍ଦ ଶ୍ରୀଯୁକ୍ତେଶ୍ୱରଜୀଙ୍କ ପ୍ରତିଷ୍ଠିତ କଡ଼ାର ଆଶ୍ରମ ତଥା ଅନ୍ୟାନ୍ୟ କେନ୍ଦ୍ର ଗୁଡ଼ିକର ସଂଗଠନ ନିମନ୍ତେ ସାଧୁସଭାର ପୁନର୍ଗଠନ ପାଇଁ ୧୯୩୭ ସାଲ ସେପଟେମ୍ବର ୫ ତାରିଖରେ ପୁନର୍ବାର ରେଜିଷ୍ଟ୍ରେସନ କରିଥିଲେ । ସ୍ୱାମୀ ଯୋଗାନନ୍ଦ ଗିରି ସାଧୁ ସଭାପତି, ସ୍ୱାମୀ ସତ୍ୟାନନ୍ଦ ଗିରି ସହକାରୀ ସାଧୁସଭାପତି, ଶ୍ରୀ ପ୍ରଭାତ ଚନ୍ଦ୍ର ଘୋଷ, ସମ୍ପାଦକ ଓ ଧନରକ୍ଷକ, ସ୍ୱାମୀ ସେବାନନ୍ଦ ଗିରି ସହକାରୀ ସମ୍ପାଦକ, ପୁରୀ କଡ଼ାର ଆଶ୍ରମର ପରିଚାଳକ ଭାବରେ ଓ ପରିଚାଳନା ସଭ୍ୟମାନଙ୍କ ମଧ୍ୟରେ ଶ୍ରୀ ପ୍ରକାଶ ଚନ୍ଦ୍ର ଦାସ, ଶ୍ରୀ ମୋତିଲାଲ ମୁଖର୍ଜୀ, ଶ୍ରୀ ଗଜେନ୍ଦ୍ର ନାଥ ମିଶ୍ର ଓ ବ୍ରହ୍ମଚାରୀ ଶାନ୍ତାଳେ ପ୍ରଭୃତି ଶ୍ରୀଯୁକ୍ତେଶ୍ୱରଜୀଙ୍କ ପରମ୍ପରାର କ୍ରିୟାବାନ ଶିଷ୍ୟଗଣ ଗୃହୀତ ହୋଇଥିଲେ । ଏହାର କାର୍ଯ୍ୟଥିଲା ଶ୍ରୀଯୁକ୍ତେ-ଶ୍ୱରଜୀଙ୍କ ପ୍ରତିଷ୍ଠିତ ସାଧୁସଭାର କର୍ମ ପ୍ରବାହକୁ ଗ୍ରହଣ କରିବା ।

ଶ୍ରୀଯୁକ୍ତେଶ୍ୱରଜୀଙ୍କ ପ୍ରତିଷ୍ଠିତ ସାଧୁମଣ୍ଡଳର ନୀତି ଓ ନିୟମକୁ କାର୍ଯ୍ୟକାରୀ କରିବା, ମହାବିଷୁବ ସଂକ୍ରମଣ ଦିନର ମାର୍ଚ୍ଚ ୨୨ ତାରିଖରେ ପୁରୀ କଡ଼ାର ଆଶ୍ରମରେ ସତସଙ୍ଗ ଉତ୍ସବ ପାଳନ କରିବା ତଥା ବିଭିନ୍ନ ସ୍ଥାନରେ ଆଧ୍ୟାତ୍ମିକ ସଭାର ଆୟୋଜନ କରିବା ।

ପରମହଂସ ଯୋଗାନନ୍ଦଙ୍କ ଏହି ନୂତନ ସାଧୁସଭାର ମେମୋରାଣ୍ଡମ୍‌ରେ ସମଧର୍ମୀ ସମିତି ଓ ଶାଖା ନିର୍ମାଣ କରି ଏହି ସାଧୁସଭା ସହିତ ସଂଯୁକ୍ତ କରିବାପାଇଁ ଉଲ୍ଲେଖ ଥିଲା । ସାଧୁସଭାର ପ୍ରତିନିଧିମାନଙ୍କୁ ବିଭିନ୍ନ ସ୍ଥାନକୁ ପଠାଇ ଆଧ୍ୟାତ୍ମିକ ପରମ୍ପରାକୁ କାର୍ଯ୍ୟକାରୀ କରିବା ଥିଲା ଏହାର ଉଦ୍ଦେଶ୍ୟ । ଏହି ସାଧୁସଭାକୁ 'କଡ଼ାର ଆଶ୍ରମ' ସହ ସଂଯୁକ୍ତ କରି ଏହାର ଟ୍ରଷ୍ଟି ଭାବରେ ସାଧୁସଭାର କର୍ମକର୍ତ୍ତା ମାନଙ୍କୁ ନିଯୁକ୍ତ କରିବା ପାଇଁ ଏଥିରେ ସ୍ପଷ୍ଟ ଉଲ୍ଲେଖ ଥିଲା । ବିଶେଷ ଭାବରେ କଡାର ଆଶ୍ରମର ସମ୍ପତ୍ତି ରକ୍ଷଣାବେକ୍ଷଣ, ପରିଚାଳନା ଓ କାର୍ଯ୍ୟପନ୍ଥାକୁ ସୁନିୟନ୍ତ୍ରିତ କରି ଏହାକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଅର୍ପଣ କରିଯିବାକୁ ଏଥିରେ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ ରହିଥିଲା । ଗୁରୁ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସ୍ମୃତି ପ୍ରତି ସମ୍ମାନ ପ୍ରଦର୍ଶନ କରି ପରମହଂସ ଯୋଗାନନ୍ଦ ଏହି ସାଧୁସଭାର ପୁନର୍ଗଠନ କଡ଼ାର ଆଶ୍ରମକୁ ଏକ ମୂଳ ଓ ପ୍ରଧାନ ଆଶ୍ରମ ଭାବରେ ପ୍ରତିଷ୍ଠା କରିବାପାଇଁ କରିଥିବା ତାଙ୍କର ସାଧୁସଭାର ରେଜିଷ୍ଟାର୍ଡ ମେମୋରାଣ୍ଡମରୁ ଜଣାଯାଏ । ଏହା ବ୍ୟତୀତ ଅନ୍ୟ ସ୍ଥାନରେ ଏହାର ଶାଖା, ପ୍ରଶାଖା ଗଠନ କରିବା ଲକ୍ଷ୍ୟ ଏଥିରେ ଉଲ୍ଲେଖ ରହିଛି । ଶ୍ରୀଯୁକ୍ତେଶ୍ୱରଜୀଙ୍କ ପରମ୍ପରାର ଶିଷ୍ୟଗଣ କେବଳ ଏଥିରେ ସାଧୁସଭାପତି ରହିପାରିବେ ବୋଲି କୁହାଯାଇଛି । ଯଦି ଏହି ପରମ୍ପରାର ଉପଯୁକ୍ତ ସନ୍ୟାସୀ ନମିଳନ୍ତି, ତେବେ ଉପଯୁକ୍ତ କ୍ରିୟାବାନ ଗୃହୀ ସାଧକ ମଧ୍ୟ ସଭାପତି, ଉପ ସଭାପତି ତଥା ଅନ୍ୟ ପରିଚାଳନା କମିଟିରେ ନିଯୁକ୍ତ ହୋଇପାରିବେ ବୋଲି ଉଲ୍ଲେଖ ରହିଥିଲା ।

ସହକାରୀ ସାଧୁସଂଘପତି ସ୍ୱାମୀ ସତ୍ୟାନନ୍ଦ ଗିରି ଓ ଶ୍ରୀ ମୋତିଲାଲ ମୁଖାର୍ଜୀ ଥିଲେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଦୁଇଜଣ ପ୍ରମୁଖ ଶିଷ୍ୟ । ସାଧୁସଂଘର ରେଜିଷ୍ଟ୍ରେସନ ସାକ୍ଷ୍ୟ ଭାବରେ ଦସ୍ତଖତ କରିଥିବା ଶ୍ରୀ ଶୈଳେନ୍ଦ୍ର ବିଜୟ ଦାସଗୁପ୍ତ ମଧ୍ୟ ତାଙ୍କର ଅନ୍ୟତମ ଶିଷ୍ୟ ଥିଲେ । ସ୍ୱାମୀ ସେବାନନ୍ଦ ଗିରି ପରମହଂସ ଯୋଗାନନ୍ଦଙ୍କଠାରୁ ସାଧନା ଗ୍ରହଣ କରିଥିଲେ । ଶ୍ରୀ ମୋତିଲାଲ ମୁଖର୍ଜୀ ତାଙ୍କର ଗୃହୀ ସାଧକ ଶିଷ୍ୟମାନଙ୍କ ମଧ୍ୟରେ ପ୍ରଧାନ୍ୟ ଲାଭ କରିଥିଲେ । ଶ୍ରୀ ମୋତିଲାଲ ଶ୍ରୀରାମପୁର ଛତ୍ରାଠାରେ ଏକ ବ୍ରାହ୍ମଣ ପରିବାରରେ ୧୮୮୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଶ୍ରୀଯୁକ୍ତେଶ୍ୱରଜୀ ଶ୍ରୀମଦ୍ ଭଗବଦ ଗୀତାର ଅଧ୍ୟାତ୍ମିକ ବ୍ୟାଖ୍ୟା ଶୁଣିବା ପରେ ସେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେ ପ୍ରକୃତରେ ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ଗୀତା ସଭା, ସତ୍ସଙ୍ଗ ସଭା ଓ ସାଧୁସଭା ସଂଗଠନରେ ବହୁ ସାହାର୍ଯ୍ୟ କରିଥିଲେ ଶ୍ରୀଯୁକ୍ତେଶ୍ୱରଜୀ ତାଙ୍କୁ କ୍ରିୟାଯୋଗ ଆଚାର୍ଯ୍ୟ ଭାବରେ କାର୍ଯ୍ୟ କରିବାକୁ ଅଧିକାର ଦେଇଥିଲେ ।

ପରମହଂସ ଯୋଗାନନ୍ଦ ଯେପରି ପଶ୍ଚିମ ଜଗତରେ କାର୍ଯ୍ୟକରିବା ଶ୍ରୀଯୁକ୍ତେଶ୍ୱରଙ୍କ ପ୍ରତିନିଧିତ୍ୱ କରୁଥିଲେ, ତାଙ୍କର ଅନ୍ୟତମ ଶିଷ୍ୟ ସ୍ୱାମୀ ସତ୍ୟାନନ୍ଦ ଗିରି ଭାରତ ବର୍ଷରେ କ୍ରିୟାଯୋଗ ପ୍ରସାର ପାଇଁ ସେହିପରି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ବଙ୍ଗଳା ଦେଶରେ ୧୮୯୬ ଖ୍ରୀଷ୍ଟାବ୍ଦରେ ନଭେମ୍ବର ୧୭ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ନାମଥିଲା ମନମୋହନ ମଜୁମ୍‌ଦାର । ୧୯୦୬ ଖ୍ରୀଷ୍ଟାବ୍ଦରେ ସେ ମୁକୁନ୍ଦଲାଲ ଘୋଷଙ୍କ ସାନିଧ୍ୟରେ ଆସିଥିଲେ । ୧୯୦୭ ରେ ସତ୍ୟାନନ୍ଦଜୀ ଲାହିଡ଼ୀ ମହାଶୟଙ୍କ ଶିଷ୍ୟ ହଂସ ସ୍ୱାମୀ କେବଳାନନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଶେଷରେ ମୁକୁନ୍ଦଲାଲ ଓ ମନମୋହନ ଶ୍ରୀଯୁକ୍ତେଶ୍ୱରଜୀଙ୍କଠାରୁ

ଉଚ୍ଚତର କ୍ରିୟା ଗ୍ରହଣ କରିଥିଲେ । ପରମହଂସ ଯୋଗାନନ୍ଦଙ୍କ ପିତା ଶ୍ରୀ ଭଗବତୀ ଚରଣଙ୍କଠାରୁ ସେ ପ୍ରଥମେ କ୍ରିୟା ଶିକ୍ଷା ପାଇଥିଲେ । ମୁକୁନ୍ଦଲାଲ ଓ ମନମୋହନ ବି. ଏ. ପାସ କରିବା ପରେ ଯଥାକ୍ରମେ ସ୍ୱାମୀ ଯୋଗାନନ୍ଦ ଗିରି ଓ ସ୍ୱାମୀ ସତ୍ୟାନନ୍ଦ ଗିରି ନାମରେ ସନ୍ୟାସୀ ହୋଇ-ଥିଲେ । ସତ୍ୟାନନ୍ଦଜୀଙ୍କ ରଚିତ ବଙ୍ଗଳା ଯୋଗାନନ୍ଦ ସଙ୍ଗରେ ଲିଖିତ ଅଛି– ପୁରୀ ଆଶ୍ରମଟିର ପାଇଁ ଟ୍ରଷ୍ଟି ନିଯୁକ୍ତ ଥିବାରୁ ସେଠାରେ ଆଶ୍ରମ ପ୍ରତିଷ୍ଠାର ଅସୁବିଧା ନଥିଲା ଶ୍ରୀ ଗୁରୁମହାରାଜ ୧୯୨୧ ଖ୍ରୀ: ଠାରୁ ଯୋଗା-ନନ୍ଦଙ୍କୁ ଜଣାଇ ମୋତେ ଏହି ଆଶ୍ରମର ଆଶ୍ରମ ସ୍ୱାମୀ ରୂପରେ ଅଭିଷିକ୍ତ କରି ଯାଇଛନ୍ତି । ପୁରୀ କଦମ୍ବର ଆଶ୍ରମର ସାଧନ ପୀଠରେ ସତ୍ୟାନନ୍ଦ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଶିଷ୍ୟଭାବରେ ସାଧନା ମଗ୍ନ ରହିଥିଲେ । ଯେତେବେଳେ ରାଞ୍ଚିରେ ବ୍ରହ୍ମଚର୍ଯ୍ୟ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ସତ୍ୟାନନ୍ଦଜୀ ସ୍ୱାମୀ ଯୋଗାନନ୍ଦଙ୍କ ଅନୁରୋଧ ରକ୍ଷାକରି ଆମେରିକା ଯିବାକୁ ପ୍ରସ୍ତୁତ ନଥିବାରୁ ରାଞ୍ଚି ସ୍କୁଲ ସ୍ୱାମୀ ଧୀରାନନ୍ଦ ଆମେରିକା ଗଲେ ଓ ସତ୍ୟାନନ୍ଦଜୀ ୧୯୨୨ ରୁ ୧୯୪୧ ପର୍ଯ୍ୟନ୍ତ ରାଞ୍ଚି ସ୍କୁଲ-ର ଅଧ୍ୟକ୍ଷ ଭାବରେ କାର୍ଯ୍ୟ କଲେ ।

ପରମହଂସ ଯୋଗାନନ୍ଦ ଭାରତକୁ ଫେରିବା ସମୟରେ ସ୍ୱାମୀ ସତ୍ୟାନନ୍ଦ ୧୯୩୬ ମସିହାରେ ଯୋଗଦା ସତ୍‌ସଙ୍ଗ ସୋସାଇଟି ଅଫ୍ ଇଣ୍ଡିଆ ଗଠନରେ ପ୍ରତ୍ୟକ୍ଷ ସଂଯୁକ୍ତ ରହି ୧୯୩୬ ରୁ ୧୯୪୧ ପର୍ଯ୍ୟନ୍ତ ଏହାର କାର୍ଯ୍ୟକାରୀ ସମ୍ପାଦକ ଭାବରେ କାର୍ଯ୍ୟ କରିଥିଲେ । ସ୍ୱାମୀ ଶ୍ରୀଯୁକ୍ତେ-ଶ୍ୱରଜୀଙ୍କ ମହାସମାଧି ସମୟରେ ସତ୍ୟାନନ୍ଦଜୀ ମଧ୍ୟ ତାଙ୍କୁ ସମାଧି ଦେବାବେଳେ ଉପସ୍ଥିତ ରହିଥିଲେ । ଏହିଠାରେ ସତ୍ୟାନନ୍ଦଜୀ ଶ୍ରୀଯୁକ୍ତେ-ଶ୍ୱରଜୀଙ୍କ ଅପ୍ରକାଶିତ ଭଗବଦ୍ ଗୀତାର ପାଣ୍ଡୁଲିପି ପାଇଥିଲେ । ତାହା ଏବେ ସତ୍ୟାନନ୍ଦଜୀଙ୍କ ପ୍ରତିଷ୍ଠିତ ଆଶ୍ରମ ସେବାୟତନରୁ ପ୍ରକାଶିତ

ହୋଇଛି । ପରମହଂସ ଯୋଗାନନ୍ଦଙ୍କୁ ସାହାଯ୍ୟ କରିବା ପାଇଁ ସେ ବହୁ ବ୍ରହ୍ମଚାରୀଙ୍କୁ ଆମେରିକା ପଠାଉଥିଲେ । ତାଙ୍କ ପ୍ରେରିତ ବ୍ରହ୍ମଚାରୀ ପ୍ରେମେଶ୍ୱରାନନ୍ଦ ସ୍ୱାମୀ ବିନୟାନନ୍ଦ ନାମ ଗ୍ରହଣ କରି ପରମହଂସ ଯୋଗାନନ୍ଦଙ୍କ ପ୍ରତିନିଧି ସହକାରୀ ସଭାପତି ଭାବରେ ଫେରିବା ପରେ ସେ ଗଞ୍ଜୁ ବିଦାୟ ନେଲେ । ପ୍ରକାଶ ଚନ୍ଦ୍ର ଦାସ ସ୍ୱାମୀ ଆତ୍ମାନନ୍ଦ ଗିରି ହୋଇ ବିନୟାନନ୍ଦଙ୍କ ସହକାରୀ ଭାବରେ କାର୍ଯ୍ୟ କରିଥିଲେ । ଏହି ସବୁ କାର୍ଯ୍ୟରେ ବିରକ୍ତ ହୋଇ ସତ୍ୟାନନ୍ଦଜୀ ଗଞ୍ଜୁ ତ୍ୟାଗ କଲେ ଏବଂ କିଛି ଦିନ ରମଣ ମହର୍ଷିଙ୍କ ଆଶ୍ରମରେ ବିତାଇଲେ । ପରେ ୧୯୪୩ ଖ୍ରୀଷ୍ଟାବ୍ଦରେ ଯୋଗାନନ୍ଦଙ୍କ ଶିଷ୍ୟ ସ୍ୱାମୀ ପ୍ରେମାନନ୍ଦ, କେବଳାନନ୍ଦଙ୍କ ଶିଷ୍ୟ ସ୍ୱାମୀ ଶୁଦ୍ଧାନନ୍ଦ ଓ ବ୍ରହ୍ମଚାରୀ ଶାନ୍ତାନନ୍ଦ, ଶ୍ରୀଯୁକ୍ତେଶ୍ୱରଜୀଙ୍କ ଶିଷ୍ୟ ଶୈଳେନ୍ଦ୍ର ବିଜୟ ଦାସଗୁପ୍ତ ଟ୍ରଷ୍ଟଡ଼ିଡ୍ କରି ସେବାୟତନ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଏଥିରେ ସତ୍ୟାନନ୍ଦଙ୍କୁ ସଭାପତି ଭାବରେ ବରଣ କରଯାଇଥିଲା । ଉଦ୍ଦେଶ୍ୟ ଥିଲା ଭବିଷ୍ୟତରେ ଯୋଗଦା ସହିତ ମିଳି କାର୍ଯ୍ୟ କରିବାକୁ ହେବ । ପରମହଂସଜୀ ଏହାର ସମର୍ଥନ କରିଥିଲେ । ମାତ୍ର ଦୁର୍ଭାଗ୍ୟ ବଶତଃ ତାଙ୍କର ଆଉ ଭାରତକୁ ପ୍ରତ୍ୟାବର୍ତ୍ତନ ସମ୍ଭବ ହୋଇନଥିଲା ।

ସତ୍ୟାନନ୍ଦଜୀ ଭାରତରେ ପ୍ରଧାନ ଆଚାର୍ଯ୍ୟ ରୂପରେ ସାଧୁସଭାର ଉପସଭାପତି ଭାବରେ କଡ଼ାର ଆଶ୍ରମର ମହାବିଷୁବ ସଂକ୍ରମଣ ତିଥି ଉତ୍ସବ କାର୍ଯ୍ୟକ୍ରମରେ ପ୍ରାୟ ଯୋଗ ଦେଉଥିଲେ । ତାଙ୍କର ରଚିତ ଯୋଗୀରାଜ ଶ୍ୟାମାଚରଣ ଲାହିଡ଼ୀ ମହାଶୟଙ୍କ ଜୀବନୀ, ଯୁଗାଚାର୍ଯ୍ୟ ସ୍ୱାମୀ ଶ୍ରୀଯୁକ୍ତେଶ୍ୱର ଗିରି ମହାରାଜ ଜୀବନୀ, ଆଚାର୍ଯ୍ୟ ଶାସ୍ତ୍ରୀ ମହାଶୟଙ୍କ ଜୀବନୀ ଓ ଯୋଗାନନ୍ଦ ସଙ୍ଗ ପ୍ରଭୃତି ସଂକ୍ଷିପ୍ତ ଗ୍ରନ୍ଥରେ ପ୍ରାମାଣ୍ୟ ତଥ୍ୟର ସମାବେଶ କରିଯାଇଛନ୍ତି । ଏହି ଗ୍ରନ୍ଥ ଗୁଡ଼ିକ ପ୍ରାୟ କଡ଼ାର ଆଶ୍ରମର ଅବସ୍ଥାନ

କାଳରେ ରଚିତ ହୋଇଥିଲା । ମାର୍ଚ୍ଚ ମାସ ୭ ତାରିଖ ୧୯୫୨ ରେ ଯୋଗାନନ୍ଦଜୀଙ୍କ ମହାସମାଧି ହୋଇଯିବାରୁ ସତ୍ୟାନନ୍ଦଜୀ ଶ୍ରୀଯୁକ୍ତେଶ୍ୱରଜୀଙ୍କ ପ୍ରତିଷ୍ଠାନ ସାଧୁସଭାର ସଭାପତି ଭାବରେ ୧୯୫୨ ରୁ ୧୯୭୨ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ସେବାୟତନ ବ୍ୟତୀତ, ଶ୍ରୀଯୁକ୍ତେଶ୍ୱରଜୀଙ୍କ ଅନ୍ୟାନ୍ୟ ଆଶ୍ରମ ବିଶେଷ କରି କରାର ଆଶ୍ରମର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସେ ଅଗଷ୍ଟ ୨ ତାରିଖ ୧୯୭୧ ଖ୍ରୀ: ରେ ମହାସମାଧି ଲାଭ କରିଥିଲେ ।

## କରାର ଆଶ୍ରମରେ ବ୍ରହ୍ମଚାରୀ ରବିନାରାୟଣ:-

ପରମହଂସଜୀ ପୁନଶ୍ଚ ଆମେରିକା ଫେରି ଯାଇଥିଲେ ମଧ୍ୟ ଭାରତରେ ତାଙ୍କର ନୂତନ ଅନୁଷ୍ଠାନ ଯୋଗଦା ସତ ସଙ୍ଗ ସମାଜ ବ୍ୟତୀତ ସେ ଆଜୀବନ ସାଧୁସଭାପତି ଭାବରେ ଶ୍ରୀଯୁକ୍ତେଶ୍ୱରଜୀଙ୍କର କରାର ଆଶ୍ରମ ପ୍ରତି ତାଙ୍କର ସେବା ଓ ସହାୟତା ସବୁ ସମୟରେ ରହିଥିଲା । ଏହି ଆଶ୍ରମର ସୁପରିଚାଳନା ପାଇଁ ସେ ସ୍ୱାମୀ ସେବାନନ୍ଦ ଗିରିଙ୍କୁ ଏଠାରେ ଅବସ୍ଥାପିତ ହେବାପାଇଁ ଅନୁରୋଧ କରିଥିଲେ । ସ୍ୱାମୀ ସେବାନନ୍ଦ ଗିରି ସାଧୁସଭାର ସହକାରୀ ସମ୍ପାଦକ, କରାର ଆଶ୍ରମର ପରିଚାଳକ ଭାବରେ ନିଯୁକ୍ତ ହୋଇଥିଲେ । ଏହି କାଳରେ ତାଙ୍କର ସହକାରୀ ଭାବରେ କରାର ଆଶ୍ରମରେ ପ୍ରବେଶ କରିଥିଲେ ଶ୍ରୀ ରବୀନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ । ସେତେବେଳେ ତାଙ୍କର ନାମ ଥିଲା ବ୍ରହ୍ମଚାରୀ ରବିନାରାୟଣ । କରାର ଆଶ୍ରମର ସାଧନ-ତିର୍ଥର ବ୍ରହ୍ମଚାରୀ ରବିନାରାୟଣ ଗଭୀର ସାଧନାରେ ମଗ୍ନ ରହିଥିଲେ । ସେ ଡ଼ିସେମ୍ବର ୧୯୩୮ ରେ ଏହି ଆଶ୍ରମରେ ଯୋଗ ଦେଇଥିଲେ ମଧ୍ୟ ତାଙ୍କର ଅବସ୍ଥିତି ସମ୍ପର୍କରେ ପରମହଂସ ଯୋଗାନନ୍ଦ ମଧ୍ୟ ବହୁକାଳ ଧରି

ଜାଣି ପାରି ନ ଥିଲେ । ୧୯୪୦ ମସିହାରେ ସାଧନା ଫଳରେ ତାଙ୍କର ଖେଚରୀ, ଭ୍ରାମରୀ ଓ ସାମ୍ଭବୀ ଅବସ୍ଥା ଲାଭ ହୋଇଥିଲା । ତାଙ୍କର ଶରୀର ମଧ୍ୟରୁ ଏକ ଦିବ୍ୟ ଜ୍ୟୋତି ଉଦଭୂତ ହୋଇଥିଲା । ପରବର୍ତ୍ତୀ କାଳରେ ବହୁଶିଷ୍ୟ ଏପରିକି ଏହି ପ୍ରବନ୍ଧର ଲେଖକ ନିଜେ ତାଙ୍କ ଶରୀରରୁ ସ୍ୱୟଂ ଜ୍ୟୋତି ଦର୍ଶନ କରିବାର ସୌଭାଗ୍ୟ ବହୁବାର ଲାଭ କରିଛନ୍ତି ।

ଏକ କୌତୁହଳ ପ୍ରଦ ସ୍ଥିତିରେ ସେ କିପରି ଗୃହ ଛାଡ଼ି ବ୍ରହ୍ମଚାରୀ ହୋଇଥିଲେ ତାହାର ବିବରଣ ଥରେ ପଚାରି ଲେଖକ ସ୍ୱାମିଜୀଙ୍କଠାରୁ ସଂଗ୍ରହ କରିଥିଲା । ସ୍ୱାମିଜୀ ବି. ଟେକ୍‌ରେ ଟ୍ରେନିଂନେଇ ଏକ ଲୁଗାକଳର ମେନେଜର ଭାବରେ ନିଯୁକ୍ତି ପାଇଥିଲେ । ପ୍ରଚୁର ଅର୍ଥ ଓ ରୂପର ଔଜ୍ଜଲ୍ୟରେ ଆକର୍ଷିତ ହୋଇ ବହୁ କନ୍ୟାପିତା ତାଙ୍କର ବିବାହ ପାଇଁ ପ୍ରସ୍ତାବ ଦେଇଥିଲେ । ଏକ ଅତ୍ୟନ୍ତ ସୁନ୍ଦରୀ କନ୍ୟା ପ୍ରତି ତାଙ୍କର ମାତା ପିତା ଆଗ୍ରହୀ ହୋଇ ତାଙ୍କ ସାକ୍ଷାତ କରିବାକୁ ବାଧ୍ୟ କରିଥିଲେ । ମାତ୍ର ସ୍ୱାମିଜୀଙ୍କ ଅନ୍ତରରେ ଥାଏ ତୀବ୍ର ବୈରାଗ୍ୟ ଓ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଶେଷ ଅନୁରୋଧର ସ୍ମୃତି । ମା ତାଙ୍କୁ ପଚାରିଲେ, କନ୍ୟାଟି ଦେଖିବାକୁ କିପରି. ତାଙ୍କର ପସନ୍ଦ ହୋଇଛି ତ । ସ୍ୱାମିଜୀ ଉତ୍ତର ଦେଲେ ମା କନ୍ୟାଟି ସୁନ୍ଦରୀ ଠିକ୍ ତମ ଭଳି । ବୃଦ୍ଧା ମାତା ଚମକି ପଡ଼ିଲେ । ସ୍ୱାମିଜୀ ବୁଝାଇ ଦେଲେ ତାର ସମସ୍ତ ସୌନ୍ଦର୍ଯ୍ୟ ମୁଁ ଦେଖି ପାରିଛି । ଏପରିକି ବୃଦ୍ଧା ହୋଇଗଲେ ତମ ଭଳି ବି ତାର ଶରୀର ପଳିତ ଓ ପକ୍ୱ ହୋଇଯିବ ତାହା ମଧ୍ୟ ମୁଁ ଦେଖି ପାରୁଛି । ମାତା ମନ ଦୁଃଖ କଲେ । ପିତା ତାଙ୍କୁ ବାଧ୍ୟ କଲେ ନାହିଁ । କାରଣ ପ୍ରାୟ ପ୍ରତି ଚାରିପୁରୁଷରେ ତାଙ୍କ ବଂଶରେ ଜଣେ ମହାତ୍ମା ପ୍ରାୟ ଜନ୍ମ ହେବାର ପରମ୍ପରା ଗଢ଼ି ଆସିଥିବାର କଥା ସେ ଜାଣିଥିଲେ । ସ୍ୱାମିଜୀ ଥିଲେ ଏକ ଧନାଢ଼୍ୟ ପରିବାରର ସନ୍ତାନ । ତାଙ୍କର

ଯେତା ଏପରି ଧନୀ ବ୍ୟକ୍ତି ଥିଲେ ଯେ ଯେ କୌଣସି ସମୟରେ ସେ କାଳରେ ମଧ୍ୟ କାହାକୁ ଲକ୍ଷେ ଟଙ୍କା ଋଣ ଦେବା ଭଳି ଶକ୍ତି ଓ ସାମର୍ଥ୍ୟ ତାଙ୍କର ଥିଲା । ସ୍ୱାମିଜୀ ଥିଲେ ଅତ୍ୟନ୍ତ ସୌମ୍ୟଦର୍ଶନ ବଳିଷ୍ଠ ଯୁବକ । ଏହି ମ୍ୟାନେଜର ଚାକିରୀ କରୁଥିବା ସମୟରେ ଅନେକ ଅର୍ଥ ନେଇ ଏକା ଫେରୁଥିବା ବେଳରେ ଏକ ଡ଼କାୟତ ସହ ତାଙ୍କର ମୁକାବିଲା କରିବାକୁ ହୋଇଥିଲା । ସ୍ୱାମିଜୀ ସେହି ଡକାୟତକୁ ଏପରି ଧକ୍କା ପାଦରେ ମାରିଲେ ଯେ ସେ ମୂର୍ଚ୍ଛିତ ହୋଇ ପଡ଼ିଗଲା ।

ସ୍ୱାମିଜୀ ସ୍ଥିର କଲେ ଏହି କାମିନୀ ଓ କାଞ୍ଚନର ସଂସାର ଛାଡ଼ି ସାଧକ ଜୀବନ ଯାପନ କରିବେ । ନିଜର ଜଣେ ବନ୍ଧୁଙ୍କୁ ମେନେଜରର ଚାକିରୀ କରାଇଦେଇ ନିଜ ପାଇଁ ପ୍ରସ୍ତାବିତ ସୁନ୍ଦରୀ କନ୍ୟାଟିକୁ ତାଙ୍କ ସହିତ ବିବାହ କରାଇ, ନିଜର କାଟରରେ ତାଙ୍କୁ ରଖି. ଝାଡ଼ା ଔଷଧ ଖାଇ ରୋଗୀ ହୋଇ ସ୍ୱାସ୍ଥ୍ୟ ପରିବର୍ତ୍ତନ ଆଳରେ ପୁରୀ ଚାଲି ଆସିଲେ । ସ୍ୱାମିଜୀଙ୍କ ଭଳି ସୁନ୍ଦର ସୁଠାମ ଓ ଆଧୁନିକ ସୌଖୀନ୍ ଯୁବକ ପୁରୀ ସହରରେ ଯୁବକ ମାନଙ୍କର ଅତିପ୍ରିୟ ହୋଇ ଉଠିବା ସ୍ୱାଭାବିକ । ଦିନେ ସ୍ୱାମିଜୀ ଠିକ କଲେ ମୌନ ସାଧନାରେ ମଗ୍ନ ହେବେ । ତାପରେ ତାଙ୍କର ସମସ୍ତ ବିଳାସୀରୂପ ପରିତ୍ୟାଗ କରି ହୋଇଗଲେ ବ୍ରହ୍ମଚାରୀ ରବିନାରାୟଣ । ଦୁଃଖର କଥା ସ୍ୱାମିଜୀଙ୍କ ସହ ମତାନ୍ତର ହେବାପରେ ପରମହଂସ ଯୋଗାନନ୍ଦଙ୍କ ଦେହାନ୍ତ ପରେ ଯେଉଁମାନେ ଯୋଗଦାର ଦାୟିତ୍ୱ ଗ୍ରହଣ କଲେ ସେମାନେ ସ୍ୱାମିଜୀଙ୍କ ପ୍ରତି ଅସୂୟା ପୋଷଣ କରି ତାଙ୍କ ଜୀବନ ସଂପର୍କରେ ଭ୍ରମାତ୍ମକ ବିବରଣ ଦେଇଛନ୍ତି । ଯୋଗଦା ପ୍ରଚାରନାରେ ଲିଖିତ ପରମହଂସ ଯୋଗାନନ୍ଦଙ୍କ ସେବକ ବୋଲି ପରିଚୟ ଦେଉଥିବା ସେବକମାନେ ଯେଉଁ କ୍ଷୁଦ୍ର ପୁସ୍ତିକା 'ପୁରୀ ଯୋଗଦା ଆଶ୍ରମର ଇତିହାସ' ନାମରେ

ଇଂରାଜୀ ଗ୍ରନ୍ଥ ସ୍ୱାମିଜୀଙ୍କ ଅପପ୍ରଚାର ପାଇଁ ଯୋଗଦାର ଶିଷ୍ୟଗଣଙ୍କ ମଧ୍ୟରେ ବାଣ୍ଟିଥିଲେ ତାହା ୧୯୭୪ ରେ ପ୍ରକାଶ ପାଇଥିଲା । ସେଥିରେ ବ୍ରହ୍ମଚାରୀ ପ୍ରକାଶ ୧୯୫୦ ସାଲରେ ସ୍ୱାମିଜୀ ଏପେଣ୍ଡିସାଇଟର୍ ରୋଗୀ ଭାବରେ ପୁରୀକୁ ଆସି କଥା ଲେଖିଛନ୍ତି । 'ମେଜଦା' ଗ୍ରନ୍ଥରେ ସନନ୍ଦଲାଲ ଘୋଷ ଙ୍କ ତଥ୍ୟ ଅନୁସାରେ କୁଆଡ଼େ ସ୍ୱାମିଜୀ ଯକ୍ଷ୍ମାରୋଗୀ ଭାବରେ ପୁରୀ ଆସିଥିଲେ ଓ ପୁରୀରେ ଭଲ ହୋଇ ଯାଇ ଆଶ୍ରମରେ ରହିଗଲେ । ଏହା ଅନ୍ଧମାନଙ୍କ ହସ୍ତୀ ଦେଖିବାର ବିବରଣ ଭଳି ଅତ୍ୟନ୍ତ ଭ୍ରମାତ୍ମକ । ସ୍ୱାମିଜୀ ଜୀବନରେ ଏଭଳି କୌଣସି ରୋଗରେ କେବେ ଆକ୍ରାନ୍ତ ହୋଇଥିବା ଜଣାନାହିଁ । ଆଜି ୮୦ ବର୍ଷ ଅତିକ୍ରମ କରିଥିଲେ ମଧ୍ୟ ସେ ବିଶ୍ୱଭ୍ରମଣ କରି ବିଶ୍ୱଗୁରୁ ହୋଇଛନ୍ତି । ତାଙ୍କ ସଂପର୍କରେ ଅସୂୟା ପ୍ରଣୋଦିତ ଏପରି ବିବରଣ ଗ୍ରହଣ ଯୋଗ୍ୟ ନୁହେଁ ।

ପରମହଂସ ଯୋଗାନନ୍ଦ ତିନିଥର ଭାରତକୁ ଫେରିବାକୁ ପ୍ରୟାସ କରିଥିଲେ ମଧ୍ୟ ତାହା ସମ୍ଭବ ହୋଇ ପାରିନଥିଲା । ମାତ୍ର ପୁରୀ କରାର ଆଶ୍ରମ ପ୍ରତି ତାଙ୍କର ଥିଲା ଗଭୀର ମମତା । ସେବାନନ୍ଦଙ୍କ କାଳରେ ଏହି ଆଶ୍ରମରେ ଯୋଗଦାର କାର୍ଯ୍ୟ ବିଶେଷ ଭାବରେ କରାଯାଇଥିଲା ଓ ତାହା ଯୋଗଦା ଆଶ୍ରମ ନାମରେ କ୍ରମଶଃ ପ୍ରସିଦ୍ଧି ଲାଭ କରିଥିଲା । ୧୯୪୧ ଖ୍ରୀଷ୍ଟାବ୍ଦରେ ଶ୍ରୀମତ୍ ସ୍ୱାମୀ ସତ୍ୟାନନ୍ଦ ଗିରିଙ୍କଠାରୁ ବ୍ରହ୍ମଚାରୀ ରବିନାରାୟଣ ତୃତୀୟ କ୍ରିୟା ଶିକ୍ଷା କରିଥିଲେ । ସେତେବେଳେ ସ୍ୱାମୀ ସତ୍ୟାନନ୍ଦଜୀ କରାର ଆଶ୍ରମର ସାଧୁ ସଭାପତି ଭାବରେ ପରମହଂସ ଯୋଗାନନ୍ଦଜୀଙ୍କ ପ୍ରତିନିଧିତ୍ୱ କରୁଥିଲେ । ସ୍ୱାମୀ ସତ୍ୟାନନ୍ଦଜୀ ବ୍ରହ୍ମଚାରୀ ରବିନାରାୟଣଙ୍କ ସାଧନା ଅବସ୍ଥା ଦେଖି ତାଙ୍କୁ ଧ୍ୟାନ ପାଇଁ ସୁଯୋଗ ଦେଉଥିଲେ । ବ୍ରହ୍ମଚାରୀ ରବିନାରାୟଣ ପ୍ରଚାର ବିମୁଖ ମୌନ ସାଧକ ଥିବାରୁ ୧୯୪୫

ସାଲ ପର୍ଯ୍ୟନ୍ତ ମଧ୍ୟ ପତ୍ରରେ ସଂଯୋଗ ସ୍ଥାପନ କରିଥିଲେ । ପ୍ରଥମେ ମେ ମାସ ୧୯୪୬ ସାଲରେ ସେ ପରମହଂସଜୀଙ୍କୁ ଜଣାଇଥିଲେ ସଂସାର ପରିତ୍ୟାଗ କରି ମୁଁ ଆପଣଙ୍କ କରୁଣା ଲାଭ ପାଇଁ ଦୀର୍ଘ ୬ ବର୍ଷ କାଳ ଏଠାରେ ରହୁଥିଲେ ମଧ୍ୟ ମୋର ଅବସ୍ଥିତି ସଂପର୍କରେ କେହି ଆପଣଙ୍କୁ ଜଣାଇ ନାହାନ୍ତି । ବ୍ରହ୍ମଚାରୀ ରବିନ୍ଦ୍ରନାଥ କିଛି ଦିନ ପାଇଁ ୧୯୪୫ ସାଲରେ ଗୃହକୁ ଯାଇଥିଲେ ଓ ପ୍ରାୟ ୬ ମାସ ବିଭିନ୍ନ ସ୍ଥାନ ପରିଭ୍ରମଣ କରି ସେ ପୁଣି କଡ଼ାର ଆଶ୍ରମକୁ ଫେରି ଆସିଥିଲେ । ପରମହଂସ ଯୋଗାନନ୍ଦ ବ୍ରହ୍ମଚାରୀ ରବିନାରାୟଣଙ୍କ ସାଧନା ଓ ଅବସ୍ଥାନ ବିଷୟ ଅବଗତ ହୋଇ ଆନନ୍ଦିତ ହୋଇଥିଲେ ।

ସ୍ୱାମିଜୀ ଏହି କାଳର ଏକ କୌତୂହଳ ପ୍ରଦ ଘଟଣା କଥା ଘଟିଥିବାର କହିଥିଲେ । ସେତେବେଳେ ପୁରୀ ସମୁଦ୍ର କୂଳ ଏପରି ଜନାକୀର୍ଣ୍ଣ ନଥିଲା । ଗୋଟିଏ ଚୋର କିଛି ଜିନିଷ ଚୋରି କରି ସମୁଦ୍ର ବାଲିରେ ପୋତୁଥିଲା । ଉଦ୍ଦେଶ୍ୟ ଥିଲା ପରେ ଆସି ନେବ । ସ୍ୱାମିଜୀ ତାକୁ ମାଡ଼ି ବସି ଧରିଲେ ଓ ପୋଲିସ ନିକଟରେ ଦେଲେ । ମାତ୍ର ଏହାହିଁ ହେଲା ତାଙ୍କର ବିପଦ । ଠିକ୍ ସକାଳେ ଧ୍ୟାନ ସମୟରେ ପୋଲିସ ଦାରବାଡ଼ ତାଙ୍କୁ ଥାନାକୁ ଡ଼କାଇ ଜମାନବନ୍ଦୀ ପ୍ରଭୃତି ନେଇଥିଲା । ଫଳରେ ସ୍ୱାମିଜୀ ବାଧ୍ୟ ହୋଇ ବ୍ରାହ୍ମମୁହୂର୍ତ୍ତରେ କ୍ରିୟାସାଧନା ଶେଷ କରୁଥିଲେ । ଏହା ଫଳରେ ତାଙ୍କର ସାଧନା ଶୀଘ୍ର ଶେଷ ହୋଇ ଉଚ୍ଚତର ଅବସ୍ଥା ଏପରିକି ସମାଧି ଅବସ୍ଥାର ପ୍ରାଥମିକ ସ୍ତର ଲାଭ ହୋଇଥିଲା । ପୋଲିସ ସାହେବ ବଡ଼ଖୁସି ହୋଇ ତାଙ୍କୁ ପୋଲିସ କନେଷ୍ଟବଲ ଚାକିରି ଦେଇଦେବେ ବୋଲି କହିଥିଲେ । କାରଣ ସେ ଏପରି କର୍ମନିଷ୍ଠ ବଳିଷ୍ଠ ଯୁବକ ଥିଲେ ଯେ ଦୁର୍ଦ୍ଦାନ୍ତ ଚୋରକୁ ମଧ୍ୟ କାବୁକରି ପାରିଛନ୍ତି । ସ୍ୱାମିଜୀ ସେତେବେଳେ ଇଂରଜୀ ପୋଲିସ ସାହେବଙ୍କୁ ବହୁ କଷ୍ଟରେ ବୁଝାଇଲେ ଯେ ଏହି ଚାକିରି ତାଙ୍କର

ଆବଶ୍ୟକ ନାହିଁ । କାରଣ ସେ ଗୃହ ସଂସାର ଛାଡ଼ି ସନ୍ନ୍ୟାସ ଜୀବନ ଯାପନ କରିବାକୁ ଚାହାନ୍ତି ।

ସେ ସମୟରେ ୧୯୪୩ ଖ୍ରୀଷ୍ଟାବ୍ଦରେ ଲାହିଡ଼ୀ ବାବାଙ୍କ ଅନ୍ୟତମ ପ୍ରଧାନ ଗୃହୀଶିଷ୍ୟ କ୍ରିୟାଯୋଗୀ ଶ୍ରୀମଦ୍ ଭୂପେନ୍ଦ୍ରନାଥ ସାନ୍ୟାଲ ପୁରୀରେ ଅବସ୍ଥାନ କରୁଥିଲେ । ସ୍ୱାମିଜୀ ତାଙ୍କର ସଂସ୍ପର୍ଶରେ ଆସି ତାଙ୍କଠାରୁ ଚତୁର୍ଥ କ୍ରିୟା'ର ସାଧନା ପ୍ରଣାଳୀ ଶିକ୍ଷା କରିଥିଲେ । ଏହି କ୍ରିୟା ସଂପର୍କରେ ବିସ୍ତାରିତ ଆଲୋଚନା ଓଡ଼ିଆ 'ବୈଜ୍ଞାନିକ କ୍ରିୟାଯୋଗ ପଦ୍ଧତି' ଗ୍ରନ୍ଥରେ ଉଲ୍ଲେଖ ଅଛି । ଏହି ସାଧନା ସଙ୍ଗେ ସଙ୍ଗେ ଗଭୀର ସମାଧି ଅବସ୍ଥା ସ୍ୱାମିଜୀଙ୍କୁ ଆଛନ୍ନ କରିଥିଲା । ସ୍ୱାମିଜୀଙ୍କର ସମାଧି ଅନୁଭୂତି ସଂପର୍କରେ ସେ ଥରେ କହିଥିବାର ଲେଖକ ଶୁଣିଛି । ତୋଟା ଗୋପୀନାଥଙ୍କ ବାଲିବନ୍ତ ପ୍ରାନ୍ତରରେ ସେ ଧ୍ୟାନସ୍ଥ ହୋଇ ପ୍ରଥମେ ତାଙ୍କର ଦେହବୋଧ ଚାଲିଯାଇ ଥିଲା । ଏହା ତାଙ୍କର ପ୍ରଥମ ନିର୍ବିକଳ୍ପ ସମାଧି । କେତେବେଳେ ସୂର୍ଯ୍ୟ ଅସ୍ତ ଯାଇଛନ୍ତି, ସନ୍ଧ୍ୟା ହୋଇଯାଇଛି ତାଙ୍କର ଜ୍ଞାନ ନଥିଲା ଏହାପରେ ତାଙ୍କର ଆସିଥିଲା ଆତ୍ମ ସନ୍ତୋଷ ।

ତାଙ୍କର ସ୍ୱହସ୍ତ ନିର୍ମିତ କାଳୀମନ୍ଦିରରେ କାଳୀମୂର୍ତ୍ତି ନିକଟରେ ସ୍ୱାମିଜୀ ଧ୍ୟାନ ମଗ୍ନ ଥାଆନ୍ତି । ବହୁ ଚେଷ୍ଟାକରି ମଧ୍ୟ ନିର୍ବିକଳ୍ପ ସମାଧି ଅବସ୍ଥା ଲାଭ କରି ପାରୁ ନଥାନ୍ତି । ହଠାତ୍ ଜଣେ ଅଜଣା ବ୍ୟକ୍ତି ତାଙ୍କ ନିକଟରେ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ସ୍ୱାମିଜୀ ତାଙ୍କୁ ଭୋଗ ଦେଲେ । ସେ ସେହି ଭୋଗ ମା କାଳୀଙ୍କୁ ନିବେଦନ କଲାରୁ ଦେଖାଗଲା ଏକ ଜ୍ୟୋତିର ଧାର ମା କାଳୀଙ୍କର ଚକ୍ଷୁରୁ ଝରି ଆସି ଭୋଗରେ ପ୍ରବେଶ କଲା । ଏହା ୧୯୪୪ ମସିହାର କଥା । ସ୍ୱାମିଜୀ ବୁଝି ପାରିଲେ ଯେ ଏହି ଅଜ୍ଞାତ ରହସ୍ୟମୟ ବ୍ୟକ୍ତି ଜଣକ ଜଣେ ମହାନ୍ ଯୋଗୀ ପୁରୁଷ ।

ସ୍ୱାମିଜୀଙ୍କୁ ସେ କୌଶଳ ଶିକ୍ଷା ଦେଲେ ଯାହା ଫଳରେ ସ୍ୱାମିଜୀ କ୍ରମଶଃ ୧୯୪୪ ରୁ ୧୯୪୭ ମଧ୍ୟରେ ସମାଧିର ସମସ୍ତ ଭୂମି ଷଷ୍ଠ ଭୂମିରେ ସିଦ୍ଧି ଲାଭ କରିଥିଲେ । ସମାଧି ଶୁଭେଚ୍ଛା, ବିଚାରଣୀ, ତନୁମାନସା, ଅସଂସକ୍ତି, ସତ୍ତାପତ୍ତି । ଅସମ୍ପ୍ରଜ୍ଞାତ ସମାଧି ପ୍ରଭୃତି ଷଷ୍ଠଭୂମି ସେ ଏହି ସମୟ ମଧ୍ୟରେ ଅତିକ୍ରମ କରିଥିଲେ । ୧୯୪୫ ଖ୍ରୀଷ୍ଟାବ୍ଦରେ ଶ୍ରୀମତ୍ ଭୂପେନ୍ଦ୍ରନାଥ ସନ୍ନ୍ୟାଲ ମହାଶୟଙ୍କ ଠାରୁ ପଞ୍ଚମ ଓ ଷଷ୍ଠ କ୍ରିୟା ସାଧନା କୌଶଳ ଶିକ୍ଷା କରିଥିଲେ । ୧୯୪୮ ଖ୍ରୀଷ୍ଟାବ୍ଦରେ ସ୍ୱାମିଜୀ ପରମହଂସ ଅବସ୍ଥା ଓ ନିର୍ବିକଳ୍ପ ଅବସ୍ଥାରେ ସିଦ୍ଧିଲାଭ କରିଥିଲେ ।

ଏଠାରେ ସ୍ମରଣ ଯୋଗ୍ୟ ଯେ ପରମହଂସ ଯୋଗାନନ୍ଦ ମଧ୍ୟ ଠିକ୍ ଏହି କାଳରେ ନିର୍ବିକଳ୍ପ ସମାଧିରେ ମଗ୍ନ ରହୁଥିଲେ । ଏହା ଜୁନ୍ ୧୯୪୮ ସାଲରୁ ଆରମ୍ଭ ହୋଇଥିଲା । ଏହି କାଳରେ ପରମହଂସଜୀ ନିର୍ବିକଳ୍ପ ସମାଧିର ଆନନ୍ଦରେ ମଗ୍ନ ରହି ନିର୍ଜନବାସ କରୁଥିଲେ । ଶ୍ରୀଯୁକ୍ତେଶ୍ୱରଜୀଙ୍କ ଏହି ଦୁଇ ମହାନ୍ ଶିଷ୍ୟଙ୍କ ମଧ୍ୟରେ ଜଣେ ଆମେରିକାରେ ଅନ୍ୟଜଣକ ଭାରତର ପୂର୍ବ ଉପକୂଳରେ ଏକ ସମୟରେ ନିର୍ବିକଳ୍ପ ସମାଧିରେ ସିଦ୍ଧିଲାଭ କରିଥିଲେ । ଜଣକୁ ସାରା ବିଶ୍ୱ ଜାଣି ସାରିଥିଲା, ଆଉ ଜଣକ ଥିଲେ କଡ଼ାର ଆଶ୍ରମର ସାଧନ ତୀର୍ଥରେ ଅଜ୍ଞାତ ଓ ଅପରିଚିତ । ପ୍ରଚାର ବିମୁଖ ଏହି ମହାନ୍ ଗୁରୁଙ୍କର ଭୂମିକା ସେତେବେଳେ ଆରମ୍ଭ ମଧ୍ୟ ହୋଇନଥିଲା ।

ପରମହଂସ ଯୋଗାନନ୍ଦ ୧୯୪୫ ମସିହାରେ କେବଳ ଜାଣିପାରିଲେ ଯେ ବ୍ରହ୍ମଚାରୀ ରବିନାରାୟଣ କଡାର ଆଶ୍ରମରେ ଅବସ୍ଥାନ କରୁଛନ୍ତି । ଏହା ଜାଣି ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ଜୁଲାଇ ୬ ତାରିଖ ୧୯୪୬

ମସିହାର ସ୍ୱାମୀ ସେବାନନ୍ଦଙ୍କ ପତ୍ରରୁ ଜଣାପଡ଼େ ଯେ ଏହି କାଳରେ ବ୍ରହ୍ମଚାରୀ ରବିନାରାୟଣ ଗୃହକୁ ଫେରିଯାଇଥିଲେ । ସେତେବେଳେ ତାଙ୍କର ସାଧନାରେ କ୍ରମଶଃ ପୂର୍ଣ୍ଣତା ଆସୁଥାଏ । ଜଟାଜୁଟ ସମ୍ପର୍ଣ୍ଣ ବ୍ରହ୍ମଚାରୀଙ୍କୁ ଦେଖି ପିତା ତାଙ୍କର ଚିହ୍ନି ପାରି ନଥିଲେ । ମାତ୍ର ଚିହ୍ନି ପାରିଥିଲେ ମାତା । ପିତାମାତାଙ୍କୁ ପ୍ରଣାମ କରି ଉଭୟଙ୍କୁ ଓ ପରିବାର ଅନ୍ୟମାନଙ୍କୁ କ୍ରିୟାଯୋଗ ସାଧନାରେ ନିଜେ ଦୀକ୍ଷା ଦାନ କରି ଦୁର୍ଗାପୂଜା ପରେ ପୁନଶ୍ଚ ସେ କଡ଼ାର ଆଶ୍ରମକୁ ଫେରି ଆସିଥିଲେ । ଭଟ୍ଟାଚାର୍ଯ୍ୟ ବଂଶରେ ପ୍ରତି ଚାରିପୁରୁଷରେ ଯେଉଁ ଜଣେ ମହାତ୍ମାଙ୍କର ଆବିର୍ଭାବ ହୁଏ ବୋଲି ପରମ୍ପରା ପ୍ରଚଳିତ ହୋଇ ଆସିଥିଲା, ବ୍ରହ୍ମଚାରୀ ରବିନାରାୟଣଙ୍କର ଆବିର୍ଭାବରେ ସେହି ସତ୍ୟ ପ୍ରମାଣିତ ହେଲା ।

ଏହି ସମୟର ଏକ ବିଚିତ୍ର ଅଲୌକିକ ଘଟଣା ସଂପର୍କରେ ଲେଖକ ଥରେ ସ୍ୱାମିଜୀଙ୍କ ଠାରୁ କଥା ଛଳରେ ଜାଣିବାକୁ ପାଇଥିଲା । ବଙ୍ଗ ଦେଶରେ ତାରକେଶ୍ୱର ମହାଦେବଙ୍କ ନିକଟରେ ଜଣେ ବ୍ୟକ୍ତି ଶୁକ୍ରତାରଲ୍ୟ ରୋଗରେ ଆକ୍ରାନ୍ତ ହୋଇ ଅଧ୍ୟା ପଡ଼ିଥିଲା । ଶେଷରେ ସେ ତାରକେଶ୍ୱରଙ୍କ ଠାରୁ ସ୍ୱପ୍ନାଦେଶ ପାଇଲା ଯେ ପୁରୀର କଡ଼ାର ଆଶ୍ରମ ମଧ୍ୟରେ ଆଜୀବନ ବ୍ରହ୍ମଚାରୀ ରବିନାରାୟଣଙ୍କଠାରୁ ପ୍ରଦତ୍ତ ଔଷଧ ପ୍ରାପ୍ତ ହେବେ ସେ ରୋଗ ଭଲ ହୋଇଯିବ । ସେ ଲୋକଟି ପୁରୀରେ ପହଞ୍ଚି ଆଶ୍ରମ ଠାବ କଲା । ସ୍ୱାମିଜୀଙ୍କୁ ତାରକେଶ୍ୱରଙ୍କ ସ୍ୱପ୍ନାଦେଶ କଥା କହିବାରୁ ସ୍ୱାମିଜୀ ବିଶ୍ୱାସ ନ କରି ଏହା ଭଣ୍ଡାମି ବୋଲି ଭାବି ତାକୁ ଫେରାଇଦେଲେ । ମାତ୍ର ଲୋକଟି ଔଷଧ ନ ପାଇଲେ ଯିବନାହିଁ ଓ ଉପବାସରେ ମରିଯିବ ବୋଲି ବସି ରହିଲା । ସ୍ୱାମିଜୀ ବଡ଼ ଚିନ୍ତାରେ ପଡ଼ିଲେ । ସ୍ୱହସ୍ତ ନିର୍ମିତ ଓ ପୂଜିତ ଇଷ୍ଟଦେବୀ ଶ୍ୟାମାକାଳୀଙ୍କ ପାଖରେ ସେ ଧ୍ୟାନସ୍ଥ ହୋଇଛନ୍ତି, ହଠାତ ଏକ ବିରାଟ ଜ୍ୟୋତିର ବଳୟ ପ୍ରକାଶିତ ହୋଇଗଲା । ତା ମଧ୍ୟରେ ଏକ

ଶିବଙ୍କ ଭକ୍ତି ଶୁଭ୍ର ହାତ, ଆଶ୍ରମର ଗାଧୁଆ ଘର ନିକଟରେ ଗୋଟିଏ ଲତା ପ୍ରତି ନିର୍ଦ୍ଦେଶ କରୁଥିବା ଛବିଟିଏ ସେହି ଆଲୋକ ମଧ୍ୟରେ ଫୁଟି ଉଠିଥିଲା । ସ୍ୱାମିଜୀଙ୍କ ମନରେ ଆସିଲା ଏହି କଣ ସେହି ଔଷଧ ବୃକ୍ଷ ଯାହା ତାରକେଶ୍ୱର ଦେବାପାଇଁ ନିର୍ଦ୍ଦେଶ ଦେଉଛନ୍ତି । ଏହା ଚିନ୍ତା କରିବା କରିବା ମାତ୍ରେ ସେହି ଆଲୋକ ବଳୟ ଓ ଛବି ଅନ୍ତର୍ହିତ ହୋଇଗଲା । ସ୍ୱାମିଜୀ ଆଶ୍ଚର୍ଯ୍ୟ ହୋଇ ଗାଧୁଆ ଘର ନିକଟରେ ସେହିପରି ଲତାଟିଏ ନେଇ ଲୋକଟିକୁ ଦେଇ ଏହା ଗୋପନ ରଖିବାକୁ କହିଥିଲେ । ଲୋକଟିର ରୋଗ ଆରୋଗ୍ୟ ହୋଇଯାଇଥିଲା ।

ଗୀତାରେ ଉଲ୍ଲେଖ ଅଛି–

‘ ଅଯତିଃ ଶ୍ରଦ୍ଧୟୋପେତୋ ଯୋଗଚ୍ଚଳିତ ମାନସଃ ।
ଅପ୍ରାପ୍ୟ ଯୋଗ ସଂସିଦ୍ଧିଂ କାଂଗତିଂ କୃଷ୍ଣ ଗଚ୍ଛତି’ ।

ହେ କୃଷ୍ଣ ପ୍ରଥମେ ଶ୍ରଦ୍ଧାଯୁକ୍ତ ହୋଇ ଯୋଗରେ ଯୁକ୍ତ ହେଲେ ମଧ୍ୟ ପରେ ଶିଥିଳତା ବଶତଃ ଯୋଗଠାରୁ ଯାହାର ମନ ବିଚଳିତ ହୋଇଯାଇଛି. ତାହାର ଯୋଗଫଳ ନ ପାଇବାର କଣ ଗତି ହୋଇଥାଏ । ଏହାହିଁ ଥିଲା ଶ୍ରୀକୃଷ୍ଣଙ୍କୁ ଅର୍ଜୁନଙ୍କର ପ୍ରଶ୍ନ । ଭଗବାନ କହିଥିଲେ– କେହି କଲ୍ୟାଣକାମୀର ଦୁର୍ଗତି ହୋଇ ନ ଥାଏ । ଯୋଗଭ୍ରଷ୍ଟ ବ୍ୟକ୍ତି ପୁଣ୍ୟକାରୀ ଗଣର ଲୋକ ପ୍ରାପ୍ତ ହୋଇ ପରେ କେଉଁ ଶ୍ରୀମାନ ଓ ପୁଣ୍ୟବାନ ଗୃହରେ ଜନ୍ମଗ୍ରହଣ କରିଥାଏ । ସ୍ୱାମିଜୀଙ୍କ ଗୃହ ଥିଲା ସାଧକର ଗୃହ । ବ୍ରହ୍ମଚାରୀ ରବିନାରାୟଣଙ୍କ ବାଲ୍ୟକାଳରୁ ଏହି ଯୋଗବିଭୂତିର ଉଦାହରଣ ଦେଖିବାକୁ ମିଳୁଥିଲା । ତେଣୁ ସେ ସାଢ଼େ ଚାରିବର୍ଷରୁ ପିତାଙ୍କ ଠାରୁ ଦେଖି ଦେଖି

ହିନ୍ଦୁଧର୍ମର ସମସ୍ତ ପୂଜାପାଠ କଣ୍ଠସ୍ଥ କରିଥିଲେ । ଥରେ ଦୁର୍ଗାପୂଜାରେ ପୂଜାର ଗ୍ରନ୍ଥ ମିଳିଲା ନାହିଁ । ସ୍ୱାମିଜୀ ସମସ୍ତ ପୂଜା ମୁହେଁ ମୁହେଁ କହିଗଲେ ଦେବୀଙ୍କ ପୂଜା ସମ୍ପନ୍ନ ହେଲା ।

ବ୍ରହ୍ମଚାରୀ ରବିନାରାୟଣ ଗୃହରୁ ପ୍ରତ୍ୟାବର୍ତ୍ତନ କରି ଗଭୀର ଧ୍ୟାନରେ ନିମଗ୍ନ ହେଲେ । ୧୯୪୯ ରେ ପରମହଂସଜୀଙ୍କ ଆର୍ଥିକ ସହାୟତାରେ ତାଙ୍କର ଗୁରୁପୀଠରେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସମାଧି ମନ୍ଦିର ଓ ଧ୍ୟାନ ମନ୍ଦିର ନିର୍ମିତ ହେଲା । ସନନ୍ଦଲାଲଙ୍କୁ ଏଥିପାଇଁ ବିଶେଷ ଭାବରେ ସାହାଯ୍ୟ କରିଥିଲେ ବୋଲି 'ମେଜଦା' ରେ ଉଲ୍ଲେଖ ଅଛି । ସନନ୍ଦଲାଲଙ୍କ ଦୁର୍ଭାଗ୍ୟ ଯେ ସ୍ୱାମିଜୀଙ୍କ ସେ ସାଧାରଣ ବ୍ରହ୍ମଚାରୀ ବୋଲି ମନେ କରିଥିଲେ । ବୁଝିବାର ଆଖି ତାଙ୍କର ନଥିଲା ଯେ ବିଶ୍ୱର ଶ୍ରେଷ୍ଠ ଫୁଲଟିଏ କଡ଼ାର ଆଶ୍ରାରେ ଫୁଟିଛି । ଅବଜାନନ୍ତି ମାଂ ମୂଢ଼ା ମାନୁଷୀ ତନୁମାଶ୍ରିତା । ନିଜର ମୂଢ଼ ପଣିଆରୁ ମହାମାନବ ନିର୍ବିକଳ୍ପ ଯୋଗୀଙ୍କୁ ଦେଖି ମଧ୍ୟ ନ ଜାଣି ତାଙ୍କୁ ଜଣେ ସାମାନ୍ୟ ବ୍ୟକ୍ତି ଭାବରେ ବର୍ଣ୍ଣନା କରିଯାଇଛନ୍ତି । ମାତ୍ର ଜାଣିଶୁଣି 'ଯୋଗଦା ଆଶ୍ରମ, ପୁରୀର ଇତିହାସରେ ସ୍ୱାମିଜୀଙ୍କୁ ଅବହେଳା ପ୍ରଦର୍ଶନ କରାଯାଇଛି ଓ ସମଗ୍ର ପରମହଂସ ଶିଷ୍ୟ ପରିବାରକୁ ଭ୍ରମଣି ତଥ୍ୟ ପରିବେଷଣ କରାଯାଇଛି ।

ସ୍ୱାମୀ ସେବାନନ୍ଦ ୧୯୫୦ ପର୍ଯ୍ୟନ୍ତ ପୁରୀ ଆଶ୍ରମର ଦାୟିତ୍ୱରେ ଥିଲେ । ତାପରେ ସେ ପରମହଂସଜୀଙ୍କୁ ଲେଖି ହିମାଳୟକୁ ଧ୍ୟାନ ଓ ବିଶ୍ରାମ ପାଇଁ ଚାଲିଗଲେ । ହିମାଳୟ ଋଷିକେଶରେ ଏବେ ମଧ୍ୟ ତାଙ୍କର ଆଶ୍ରମ ଅଛି । ଏହାପରେ ପୁରୀ ଆଶ୍ରମର ସମସ୍ତ ପରିଚାଳନା ଦାୟିତ୍ୱ ବ୍ରହ୍ମଚାରୀ ରବିନାରାୟଣଙ୍କ ହସ୍ତରେ ଅର୍ପିତ ହେଲା । ସେବାନନ୍ଦଙ୍କ କାଳରେ

କଡ଼ାର ଆଶ୍ରମ ଯୋଗଦା ଆଶ୍ରମ ନାମରେ ମଧ୍ୟ ପ୍ରସିଦ୍ଧି ଲାଭ କରିଥିଲା । କାରଣ ପରମହଂସ ଯୋଗାନନ୍ଦଙ୍କ ଯୋଗଦା କାର୍ଯ୍ୟ କଡ଼ାର ଆଶ୍ରମ ମଧ୍ୟରେ ଚାଲିଥିଲା । ୧୯୮୭ ସେପଟେମ୍ବର ଶେଷ ସପ୍ତାହରେ ସେବାନନ୍ଦଙ୍କ ସହ ଲେଖକଙ୍କର ସାକ୍ଷାତ ଋଷିକେଶରେ ହୋଇଥିଲା । ତାଙ୍କର "କ୍ରିୟା—ଯୋଗ ବିଜ୍ଞାନ' କୈବଲ୍ୟ ଦର୍ଶନର ଦାର୍ଶନିକତା ବଙ୍ଗଳାରେ ରଚିତ ହୋଇଛି ତାଙ୍କ ସହ ଆଲୋଚନାରୁ ଜଣାଯାଏ ସ୍ୱାମିଜୀଙ୍କ ବର୍ତ୍ତମାନ ବୟସ ୭୫ ବର୍ଷ । ସ୍ୱାମୀ ହରିହରାନନ୍ଦଙ୍କଠାରୁ ସେ ଥିଲେ କନିଷ୍ଠ । ଯୋଗଦାର ସାମ୍ପ୍ରତିକ ସ୍ଥିତି କଥା ଜାଣି ସଂଗଠନ ପ୍ରତି ତାଙ୍କର ବିମୁଖତା ସେ ପ୍ରକାଶ କରିଥିଲେ । ସେବାନନ୍ଦ ଗିରି ଜଣେ ଉଚ୍ଚଶିକ୍ଷିତ ପଣ୍ଡିତ ବ୍ୟକ୍ତି । ଋଷିକେଶର ନିର୍ଜନ ପରିବେଶରେ ସେ ସାଧନାରତ ରହିଛନ୍ତି । ଖୁବ୍ କମ୍ ସାଧକଙ୍କୁ କ୍ରିୟା-ଯୋଗରେ ଦୀକ୍ଷିତ କରିଥିଲେ ମଧ୍ୟ ନିଜକୁ ନିଷ୍ଠାପର ସାଧକ ଭାବରେ ସେ କ୍ରିୟାଯୋଗରେ ଜଣେ ବିଶିଷ୍ଟ ଆଚାର୍ଯ୍ୟ ଭାବରେ କାର୍ଯ୍ୟ କରୁଛନ୍ତି ।

## ମହାମୁନୀ ବାବାଜୀଙ୍କ ସହ ସାକ୍ଷାତ-!

କଡ଼ାର ଆଶ୍ରମର ସାଧନ ତୀର୍ଥରେ ବ୍ରହ୍ମଚାରୀ ରବିନାରାୟଣ ମୌନ ହୋଇ ବାବାଜୀ ମହାମୁନୀଙ୍କୁ ଦର୍ଶନ କରିବା ସଂକଳ୍ପରେ ବହୁଦିନ ଧ୍ୟାନ କଲେ । ଏହା ୧୯୪୯ ଖ୍ରୀଷ୍ଟାବ୍ଦର କଥା । ଦରଜା ଓ ଝରକା ବନ୍ଦକରି ସେ ଧ୍ୟାନ କରୁଥିବା ସମୟରେ ତାଙ୍କର ମନେ ହେଲା କେହି ଜଣେ ଗୃହ ମଧ୍ୟରେ ପ୍ରବେଶ କରିଛି, କାରଣ ତାହାର ପଦଶବ୍ଦ ସେ ଶୁଣି ପାରିଲେ । ଆଖି ଖୋଲି ଦେଖିଲେ ଗଉଡ଼ ବେଶ ପୋଷାକ ପିନ୍ଧିଥିବା ଜଣେ ଦେବତୁଲ୍ୟ ଯୁବକ ତାଙ୍କ ଆଗରେ ଉଭା ହୋଇଛି । ବାବାଜୀଙ୍କ ମୂର୍ତ୍ତି ଯେପରି ଗୁରୁ ପରମ୍ପରା ମୂର୍ତ୍ତି ମଧ୍ୟରେ ଦେଖିବାକୁ ମିଳୁଛି, ଏହି ମୂର୍ତ୍ତି

ତାହାଠାରୁ ଟିକେ ଭିନ୍ନ । ତାହାଠାରୁ ଆହୁରି ସୁନ୍ଦର, ସୁଠାମ, ଦେବୋ-ଚିତ ଜ୍ୟୋତିର୍ମୟ ଭଗବଦ ତନୁ ଦେଖି ସ୍ୱାମିଜୀ ମୁଗ୍ଧ ହୋଇଗଲେ । ସ୍ୱାମିଜୀ ବିସ୍ମୟ ବିମୂଢ଼ ଚିତ୍ତରେ ତାଙ୍କୁ ପ୍ରଶ୍ନ କଲେ 'ଆପଣ କିଏ' ?

ମୌନ ଯୁବକ ସଙ୍ଗେ ସଙ୍ଗେ ଆସି ପାଖରେ ଠିଆ ହୋଇ ଡ଼ାହାଣ ହାତ ଦ୍ୱାରା ତାଙ୍କର ଆଖି ସ୍ପର୍ଶ କଲେ ଓ ସଙ୍ଗେ ସଙ୍ଗେ ଛାଡ଼ିଦେଲେ । ଏହି ସ୍ପର୍ଶ ଫଳରେ ତାଙ୍କ ସମଗ୍ର ଶରୀରରେ ରୋମାଞ୍ଚ ଓ ବ୍ରହ୍ମଜ୍ୟୋତିରେ ପରିପୂର୍ଣ୍ଣ ହୋଇଗଲା । ଆଖି ଖୋଲିଲେ ମଧ୍ୟ ଦେଖିଲେ ଘର ମଧ୍ୟରେ ଏକ ଅଭିନବ ଜ୍ୟୋତିର ଫୁଆରା । ଚାରିଆଡ଼େ ଝଲମଲ କରୁଛି । କିଛିକ୍ଷଣ ପରେ ସେହି ବ୍ରହ୍ମଜ୍ୟୋତି ଆଉ ଦେଖାଗଲା ନାହିଁ । ଘର ମଧ୍ୟରେ ଆଉ କେହି ନଥିଲେ । ଆଗରୁ ଯେପରି ଦ୍ୱାର ଝରକା ବନ୍ଦଥିଲା ସବୁ ସେହିପରି ଅଛି । ମନୁଷ୍ୟର ଚିହ୍ନ ବର୍ଣ୍ଣ ନାହିଁ । ବାବାଜୀଙ୍କ ସ୍ପର୍ଶ ପାଇବା ସଙ୍ଗେ ସଙ୍ଗେ ବ୍ରହ୍ମଚାରୀ ରବିନାରାୟଣ ବୁଝିପାରିଥିଲେ ଯେ ମହାମାନବ ପରମ ପୁରୁଷ ମହାବତାର ବାବାଜୀ କରୁଣା କରି ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ-ଛନ୍ତି । ମାତ୍ର ଏହା ପରିଚିତ ଫଟୋଠାରୁ ଭିନ୍ନ ଥିବାରୁ ହଠାତ୍ ଚିହ୍ନି-ନପାରିଥିଲେ । ଏହି ପ୍ରତ୍ୟକ୍ଷ ମୂର୍ତ୍ତି ଅତ୍ୟନ୍ତ ରମଣୀୟ ଦିବ୍ୟ ଭଗବଦ୍ ମୂର୍ତ୍ତି ଥିଲା ।

ବାବାଜୀ ମହାରାଜଙ୍କୁ ଦେଖିବାକୁ ନପାଇଁ ସ୍ୱାମିଜୀ ଦୁଃଖରେ ଅଭିଭୂତ ହୋଇଗଲେ । କେତେ ସୌଭାଗ୍ୟ ଫଳରୁ ବାବାଜୀ ମହାରାଜ ପାଖକୁ ଆସିଥିଲେ । ଅଥଚ ତାଙ୍କର ଦେବ ତୁଲ୍ୟ ଚରଣ ଯୁଗଳ ସ୍ପର୍ଶ କରି ପାରିଲେ ନାହିଁ, କଥା ବାର୍ତ୍ତା ମଧ୍ୟ ହୋଇପାରିଲେ ନାହିଁ । ଏହି ଆବେଗମୟ ଅବସ୍ଥା କଟିଯିବା ପରେ ସେ ପୁଣି ବାବାଜୀ ମହାମୁନୀଙ୍କୁ

ଦର୍ଶନ ଅଭିଳାଷରେ ପୁଣି ତୀବ୍ର ଧ୍ୟାନରେ ବସିଗଲେ । ଏହିପରି ତିନି ଘଣ୍ଟା ବିତିଗଲା, ତଥାପି ମହାମୁନୀଙ୍କର ଦର୍ଶନ ମିଳିଲା ନାହିଁ । ମନରେ ଗଭୀର ଦୁଃଖ, ଧ୍ୟାନରୁ ଉଠି ଦିନ ଦଶଟା ବେଳେ ସେ ସ୍ନାନ କରିବାକୁ ଗଲେ । ଏହାପରେ ପୁଣି ନିଜର ସାଧନ ଗୃହ ନିକଟରେ ସ୍ୱ ପ୍ରତିଷ୍ଠିତ କାଳୀମୂର୍ତ୍ତି ଅବସ୍ଥାପିତ ମନ୍ଦିରରେ ପ୍ରବେଶ କରି ଦରଜା, ଅର୍ଗଳି ବନ୍ଦକରି ଦେଇ କାଳୀମୂର୍ତ୍ତି ସମ୍ମୁଖରେ ଅଶ୍ରୁ ବିମୋଚନ କଲେ । ମାଙ୍କୁ ଜଣାଇଲେ ମା–ବାବାଜୀ ମହାରାଜ ଆସିଥିଲେ, ତାଙ୍କ ପାଦ ସ୍ପର୍ଶ କରି ପାରିଲି ନାହିଁ, କଥାବାର୍ତ୍ତା କରି ପାରିଲି ନାହିଁ ।

କିଛି ସମୟ ପରେ ସ୍ୱାମିଜୀ ଆଖିବୁଜି ବାବାଜୀ ମହାରାଜଙ୍କ ମୂର୍ତ୍ତି ଧ୍ୟାନରେ ବିଭୋର ହୋଇଗଲେ । ପ୍ରାୟ ଦୁଇ ତିନି ମିନିଟ ପରେ ସ୍ୱାମିଜୀ ସେ ରୁଦ୍ଧ କ୍ଷୁଦ୍ର ପ୍ରକୋଷ୍ଠ ମଧ୍ୟରେ ମନୁଷ୍ୟର ପାଦଶବ୍ଦ ଓ ପ୍ରବେଶର ସୂଚନା ପାଇ ଆଖି ଖୋଲି ଦେଖିଲେ, ବାବାଜୀ ତାଙ୍କ ବାମ ପାଖରେ ଦିବ୍ୟ ଜ୍ୟୋତିର୍ମୟ ମୂର୍ତ୍ତିରେ ଉଭା ହୋଇ ରହିଛନ୍ତି । ସ୍ୱାମିଜୀ ଆଉ କିଛି ନ କହି ତାଙ୍କର କୋମଳ ଦେବତୁଲ୍ୟ ପାଦଯୁଗଳ ଉପରେ ଲୋଟିପଡ଼ି ମଥା ସ୍ପର୍ଶ କଲେ । ତାଙ୍କର ଶରୀର ରୋମାଞ୍ଚିତ ହୋଇଗଲା । ସ୍ୱାମିଜୀ ବସିବା ପରେ ତାଙ୍କର ମସ୍ତକ ମହାମୁନୀ ତାଙ୍କର ଦକ୍ଷିଣ ହସ୍ତ ସ୍ଥାପନ କଲେ । ସ୍ୱାମିଜୀ ବାବାଜୀଙ୍କ ଅସୀମ କରୁଣା ଉପଲବ୍ଧି କରି ବ୍ରହ୍ମାନନ୍ଦରେ ବିଭୋର । ତଥାପି ମନରେ ଥିଲା କିପରି ତାଙ୍କର କଣ୍ଠସ୍ୱର ଶୁଣିବି, ସେ ମୋତେ କିଛି କହିବେ ସେ ଯେପରି ତାଙ୍କର କିଛି ସେବା କରି ପାରିଲେ ମନରେ ପରମ ତୃପ୍ତି ଆସନ୍ତା । ପରମ ପୁରୁଷ ପରମାତ୍ମା ବାବାଜୀ ତାଙ୍କର ମନର ଭାବ ବୁଝିପାରିଲେ । ପଚାରିଲେ ତୁମେ ଏହି ଫଳ ମୂଳ ଦେବତାଙ୍କୁ ନିବେଦନ ପାଇଁ ରଖିଛ । ଏହା ଯଦି ମୁଁ ଖାଇବି, ତାହାହେଲେ ତୁମେ

ପୁଣି ଦେବତାଙ୍କୁ ନିବେଦନ କରିବ ? ଏହା ଶୁଣି ସ୍ୱାମିଜୀ ସଙ୍ଗେ ସଙ୍ଗେ କହିଲେ ପ୍ରଭୁ, ଆପଣ ପ୍ରତ୍ୟକ୍ଷ ଓ ଜୀବନ୍ତ ଦେବତା । ତେଣୁ ଆପଣ ସେହି ଫଳ କୃପାକରି ଗ୍ରହଣ କଲେ, ମୋର ମାନବ ଜନ୍ମ ସଫଳ ହୋଇ-ଯିବ । ପରେ ମୁଁ ତାହା ଦେବତାଙ୍କୁ ନିବେଦନ କରି ପାରିବି ।

ମହାମୁନୀ ବାବାଜୀ ଫଳ ଥାଳିରୁ ଟିକିଏ କଦଳୀ ଖଣ୍ଡ ଉଠାଇ ଗ୍ରହଣ କଲେ ଓ ପରେ ଆଉ ଟିକିଏ କଦଳୀ ଖଣ୍ଡ ଖାଇଲେ । ତାହାପରେ ସ୍ୱାମିଜୀଙ୍କର ମଥା ଉପରେ ହାତରଖି କହିଲେ-ମୁଁ ତୁମର ସାଧନାରେ ସନ୍ତୁଷ୍ଟ ହୋଇଛି । ତୁମେ ଯେ କ୍ଷଣଜନ୍ମା ପୁରୁଷ ଓ ଜନ୍ମ ଜନ୍ମାନ୍ତରୁ ସାଧନା କରି ଆସିଛ ତାହା ମୁଁ ଉପଲବ୍ଧି କରିଛି । ତେଣୁ କେବଳ ମାତ୍ର ତୁମର ଥାଳିରୁ ଫଳ ଉଠାଇ ଖାଇଲି! ଏହା ପୂର୍ବରୁ କେଉଁଠି ଏପରି ଖାଇ ନାହିଁ । ତୁମେ ଏହି କ୍ରିୟାଯୋଗ ଗଭୀର ନିଷ୍ଠା ସହକାରେ ସାଧନା କରି ବିଶ୍ୱରେ ଏହା ସର୍ବତ୍ର ପ୍ରଚାର କରିବ ଏବଂ ଜଗଦ୍‌ଗୁରୁ ରୂପରେ ସମ୍ମାନିତ ହେବ ।

ବାବାଜୀ ମହାରାଜ କହିଲେ – ସାଧନାର ଶେଷ ନାହିଁ ଧ୍ୟାନର ମଧ୍ୟ ଅନ୍ତ ନାହିଁ । ଯେତେ ସତ୍ୟନିଷ୍ଠ ସହକାରେ ଗଭୀର ଧ୍ୟାନ ମଗ୍ନ ହେବ, ପରମାତ୍ମାଙ୍କୁ ପ୍ରେମ ଭକ୍ତି ଅର୍ପଣ କରିବ, ସେତିକି ତୁମ ମଧ୍ୟରେ କ୍ରିୟାଯୋଗର ଅଲୌକିକ ପ୍ରତ୍ୟକ୍ଷ ମହାଶକ୍ତି ପ୍ରକାଶ ପାଇବ । ତୁମେ ସେହି ଭଗବଦ ଶକ୍ତିର ପ୍ରକାଶ ତାତ୍ତ୍ୱ ଭବରେ ଅନୁଭବ କରି ଜାତିଧର୍ମ ନିର୍ବିଶେଷରେ ଯେ କୌଣସି ଲୋକ ମଧ୍ୟରେ ଅଳ୍ପ ସମୟ ମଧ୍ୟରେ ସର୍ବାଙ୍ଗରେ କୁଣ୍ଡଳିନୀ ଜାଗରଣ କରି ଭଗବଦ ଜ୍ୟୋତି, ଭଗବଦ ଧ୍ୱନି ଓ ଭଗବଦ ସ୍ପର୍ଶର ଆସ୍ୱାଦନ ଦେଇ ସମସ୍ତଙ୍କୁ ପ୍ରକୃତରେ ଭଗବତ୍ ପ୍ରେମରେ ଉଦ୍‌ବୁଦ୍ଧ କରିପାରିବ । କ୍ରିୟାଯୋଗର ପରମ୍ପରାରେ ଏହାହିଁ

ବାବାଜୀ ମହାମୁନୀଙ୍କର ପରମ କରୁଣା ବ୍ରହ୍ମଚାରୀ ରବିନାରାୟଣଙ୍କ ମଧ୍ୟରେ ଅଭିବ୍ୟକ୍ତ ହୋଇଥିଲା । ଏହି ଶକ୍ତି ପରବର୍ତ୍ତୀ କାଳରେ ସ୍ୱାମିଜୀ ଓ ତାଙ୍କର ଉଚ୍ଚାଙ୍ଗ ଶିଷ୍ୟମାନଙ୍କ ମଧ୍ୟରେ ସଂଚାରିତ ହୋଇଛି । ଗଙ୍ଗା, ଯମୁନା, ସରସ୍ୱତୀର ତ୍ରିବେଣୀ ଧାରା ଭଳି ତ୍ରିଗଦା ଅଯପା ଗାୟତ୍ରୀର ଏହି ମହାନ୍ ସାଧନ ଶକ୍ତିର ଧାରା ପୁନଶ୍ଚ ନୂତନ ଭାବରେ ଏହି ପୃଥିବୀ ବକ୍ଷରେ ପ୍ରବାହିତ ହେବାପାଇଁ ଏହି ମହାନ୍ ପୁରୁଷ ହେଲେ ନୂତନ ଯୁଗର ଭଗୀରଥ ।

ମହାମୁନୀ ବାବାଜୀ ବ୍ରହ୍ମଚାରୀ ରବିନାରାୟଣଙ୍କୁ କହିଲେ 'ମୁଁ ଦରଜା ଖୋଲି ବାହାରକୁ ଯାଉଛି । ତୁମେ ଆସନ ଛାଡ଼ି ବାହାରକୁ ଆସିବ ନାହିଁ କି ପଛ ଆଡକୁ ଚାହିଁ ଦେଖିବ ନାହିଁ । ତୁମେ କେବଳ ଶାନ୍ତ ହୋଇ ଧ୍ୟାନ ଶେଷ କରି ବାହାରକୁ ଆସିବ ।' ଏହାପରେ ସେ ନିଜ ହାତରେ ଦରଜା ଅର୍ଗଳି ଖୋଲି ବାହାରକୁ ଗଲେ ଏବଂ ଦରଜା ବନ୍ଦ କରି ଦେଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ପଛକୁ ନଚାହିଁ ସ୍ୱାମିଜୀ ଅଳ୍ପ ସମୟ ପରେ ଧ୍ୟାନ ସାରି ବାହାରକୁ ଆସିଲେ । ଦେଖିଲେ ମନ୍ଦିରର ସିଡ଼ି ପାହାଚ ଉପରେ ଆଶ୍ରମ ସ୍କୁଲର ବହୁ ପିଲା ବସିଛନ୍ତି ଓ ବହୁପିଲା ବାହାରେ ଖେଳୁଛନ୍ତି ।

ବାହାରକୁ ଆସି ସ୍ୱାମିଜୀ ପିଲାମାନଙ୍କୁ ପଚାରିଲେ- ବର୍ତ୍ତମାନ ସୁନ୍ଦର ଗୌରବର୍ଣ୍ଣର ସାଧୁ ଜଣେ ଛୋଟ ଲୁଗା ପିନ୍ଧି ବାହାରକୁ ଗଲେ । ତାଙ୍କ ଦେହରେ ଲୁଗା ପଟା କିଛି ନଥିଲା । ଏମିତି ଜଣେ ସାଧୁଙ୍କୁ ଯିବାର ତୁମେ ଦେଖିଛ କି ? କୁଆଡ଼େ ଗଲେ ଜାଣିଛ କି ? ଏହା ଶୁଣି ପାହାଚ ଉପରେ ବସିଥିବା ପିଲମାନେ କହିଲେ - ଆମେ ଏଠାରେ ତ ବସିଛୁ,

କାହିଁ କାଳୀ ମନ୍ଦିରରୁ କେହି ବାହାରକୁ ତ ଯାଇ ନାହାନ୍ତି । ସ୍ୱାମିଜୀ ଏହାଶୁଣି ବ୍ରହ୍ମାନନ୍ଦରେ ବିଭୋର ହୋଇ ଭାବିଲେ ମହାମୁନି ବାବାଜୀ ତାଙ୍କ ପ୍ରତି ଅଗାଧ କରୁଣା କରି ଆଶ୍ରମରେ ଦୁଇଥର ଦର୍ଶନ ଦେଇ- ଛନ୍ତି । ସେ ଉପଲବ୍ଧି କଲେ ଯେ ତାଙ୍କର ପରମ ସୌଭାଗ୍ୟ ଯେ ବ୍ରହ୍ମସ୍ୱରୂପ ମହାତ୍ମାଙ୍କୁ ଦର୍ଶନ କରି ସେ ତାଙ୍କୁ ଆରାଧନା କରି ପାରିଛନ୍ତି ।

ଗୁରୁବର୍ଗଙ୍କ କୃପାଲାଭ କରି ସ୍ୱାମିଜୀ ୧୯୬୧ ମସିହାରେ ଜୀବନରେ ପ୍ରଥମେ ତୀର୍ଥ ଭ୍ରମଣରେ ବାହାରିଥିଲେ । ପ୍ରଥମେ ସେ ରଣୀ କ୍ଷେତ ଯାଇଥିଲେ । ରଣୀକ୍ଷେତ ହିମାଳୟର ଉଚ୍ଚତମ ପର୍ବତ ( ୨୫, ୬୬୧ ଫୁଟ ) ର ପାଦ ଦେଶରେ ଅବସ୍ଥିତ । ଏହା ହିମାଳୟର ଉତ୍ତରାଞ୍ଚଳ ସ୍ଥିତ ବଦ୍ରୀ ନାରାୟଣର ନିକଟବର୍ତ୍ତୀ ଅଟେ । ଏହି ବଦ୍ରୀ ନାରାୟଣର ହିମାଳୟ ଅଞ୍ଚଳରେ ଏପର୍ଯ୍ୟନ୍ତ ମଧ୍ୟ ବାବାଜୀ ମହାରାଜ ଜୀବନ୍ତ ଭାବରେ ଅବସ୍ଥାନ କରୁଛନ୍ତି ବୋଲି ପରମହଂସ ଯୋଗାନନ୍ଦ ତାଙ୍କ ଯୋଗୀ କଥାମୃତରେ ଲେଖିଛନ୍ତି । ବଦରୀନାଥ ଉତ୍ତରାଖଣ୍ଡରେ ଭଗବାନ ହରିବିଷ୍ଣୁଙ୍କ ସାଧନତୀର୍ଥ ଭାବରେ ପରିଚିତ । ଏହା ଅଳକା- ନନ୍ଦର ଉଦ୍‌ଗମ କ୍ଷେତ୍ର । ଏଠାରେ ଭଗବାନ କୃଷ୍ଣ ରୁକ୍ମିଣୀଙ୍କ ସହ ବଦରୀ ଫଳ ଖାଇକରି ଦୀର୍ଘକାଳ ତପଶ୍ଚର୍ଯ୍ୟା କରିଥିଲେ । ଏହି ସ୍ଥାନରେ ଥିବା ବ୍ୟାସ ଗୁମ୍ଫାରେ ମହର୍ଷି ବ୍ୟାସ ମହାଭାରତ ଆଦି ପୁରାଣ ରଚନା କରିଥିବାର ପ୍ରସିଦ୍ଧି ଅଛି । ପୂର୍ବକାଳରେ ନରନାରାୟଣ ଏହିଠାରେ ତପସ୍ୟା କରିଥିଲେ । ଶ୍ରୀକୃଷ୍ଣ ଯଦୁବଂଶ ଧ୍ୱଂସର ପୂର୍ବକାଳରେ ଉଦ୍ଧବଙ୍କୁ ଏହି ବଦ୍ରିକା ଆଶ୍ରମକୁ ପଠାଇଥିଲେ । ବାବାଜୀ ମହାମୁନି ଏହି ଭୂଖଣ୍ଡରେ ରହିଥାନ୍ତି । ପୁଣି ରଣୀକ୍ଷେତରେ କ୍ରିୟାଯୋଗର ଅଧୁନିକ ପ୍ରବର୍ତ୍ତକ

ଶ୍ରୀ ଶ୍ୟାମାଚରଣ ଦୀକ୍ଷା ଗ୍ରହଣ କରି ବିଶ୍ୱରେ ଏହି ସାଧନାର ପ୍ରଚାର କରିଥିଲେ । ସେଠାରେ ବାବାଜୀଙ୍କ ସାଧନ ଗୁହା ଅଛି ।

ସ୍ୱାମିଜୀ ସେଠାରେ ପହଞ୍ଚି ଲୋକମାନଙ୍କୁ ପଚାରିଲେ କେଉଁ ପଥରେ ଗଲେ ବାବାଜୀ ମହାରାଜଙ୍କ ସାଧନ ଗୁହା ଦର୍ଶନ ଓ ତାଙ୍କର ଦର୍ଶନ ଲାଭ ହେବ । ଦୁଇ ତିନିଜଣ କହିଲେ ସେହି ପଥର ଶେଷ ସୀମାରେ ଉତ୍ତର ପାଖରେ ଏକ ବିଶାଳକାୟ ବୟୋ-ବୃଦ୍ଧ ସାଧକ ଛଣଘର ମଧ୍ୟରେ ଧୂନି ଜାଳି ବସିଛନ୍ତି । ତାଙ୍କୁ ପଚାରିଲେ ସେ ଆପଣଙ୍କୁ ମାର୍ଗ ଦର୍ଶନ ଦେଇ ପାରିବେ । ସ୍ୱାମିଜୀ ସେଠାରୁ ଟ୍ୟାକ୍ସି ଭଡ଼ାକରି ଟ୍ୟାକ୍ସିକୁ କିଛି ଦୂରରେ ଅପେକ୍ଷା କରିବାକୁ କହି ପାହାଡ ଉପରକୁ ଗଲେ । ଡ୍ରାଇଭର କହିଲା– ପାହାଡ ଉପରେ ଛଣ ଘରେ ସେହି ବାବାଜୀ ସର୍ବଦା ଧ୍ୟାନ ନିବିଷ୍ଟ ଅଛନ୍ତି । ଆପଣ ଗଲେ ଆପଣଙ୍କ ସହ କଥା କହି ପାରନ୍ତି ।

ଦିନ ସେତେବେଳେ ମଧ୍ୟାହ୍ନ ସାଢ଼େ ବାରଟା ବାଜି ଯାଇଥିଲା । ସ୍ୱାମିଜୀ ଅତ୍ୟନ୍ତ କ୍ଷୁଧାର୍ତ୍ତ ଓ କ୍ଳାନ୍ତ ହୋଇ ପଡ଼ିଥିଲେ । ପାହାଡ଼ଟି ଅବଶ୍ୟ ବେଶୀ ଉଚ୍ଚ ନୁହେଁ– ୨୦ । ୨୫ ଫୁଟ ଉଚ୍ଚା ହେବ । ସ୍ୱାମିଜୀ ଧୀରେ ଧୀରେ ସେଠାକୁ ଗଲେ ଓ ଦେଖିଲେ ଜଣେ ବାବାଜୀ ଆଖିଖୋଲି ଧୂନି ପାଖରେ ବସିଛନ୍ତି । ସ୍ୱାମିଜୀ ତାଙ୍କ ସାଧନରେ ବିଘ୍ନ କରିବା ଉଚିତ୍ର ନୁହେଁ ବୋଲି ଭାବି ମନେ ମନେ ଶଙ୍କିତ ହେଲେ । ମାତ୍ର ସେହି ବାବାଜୀ ଆନ୍ତରିକ ଆହ୍ୱାନ ଜଣାଇ ତାଙ୍କୁ ହିନ୍ଦୀରେ କହିଲେ– ଏଠାକୁ ଆସ, ବ । ତାଙ୍କୁ ଆସନ ଦେଇ ରୋଟି, ଘିଅ ଓ ଗଡ଼ମ ମିଶାଇ ଖାଇବାକୁ ଦେଲେ । ସ୍ୱାମିଜୀ ତାଙ୍କର ବ୍ୟବହାର ଦ୍ୱାରା ତାଙ୍କୁ ଜଣେ ଦ୍ରଷ୍ଟା ପୁରୁଷ ବୋଲି ଅନୁଭବ କଲେ ।

ସେ ଏହାପରେ ତାଙ୍କୁ କହିଲେ ଯେ ମହାମୁନୀ ବାବାଜୀ ସେହି ଗୁହାରେ ସବୁବେଳେ ରହନ୍ତି ନାହିଁ । ସେଠାକୁ ଗଲେ ମଧ୍ୟ ତାଙ୍କର ସାକ୍ଷାତ ମିଳିବା ଅସମ୍ଭବ । ଏହାର ଉତ୍ତର ପୂର୍ବ କୋଣ ପଥରେ ଗଲେ ଗୋଟାଏ ଆପେଲ ଉଦ୍ୟାନ ଅଛି, ସେଠାରୁ ସିଧା ପୂର୍ବ ପଟକୁ ଯିବାକୁ ହେବ । କିନ୍ତୁ ଅତି କମ୍‌ରେ ହଜାରରୁ ବେଶି ପାହାଚ ଚଢ଼ି ଯିବାକୁ ପଡ଼ିବ । ସେଠି ତୁମେ ଗୁମ୍ଫା ଦେଖିପାରିବ । ମାତ୍ର ଏହି ପଥ ଅତି ଦୁର୍ଗମ । ଗୋଟିଏ ଗୋଟିଏ ପାହାଚ ବହୁତ ଉଚ୍ଚ । ସେଠାକୁ ଯିବା ଓ ଆସିବା ବହୁତ କଷ୍ଟକର । ଏହା ଶୁଣି ସ୍ୱାମିଜୀ ଆନନ୍ଦିତ ହେଲେ । ସେତେବେଳେ ତାଙ୍କ ଦେହରେ ବହୁତ ଶକ୍ତି ଥିଲା । ତାଙ୍କୁ ପ୍ରଣାମ କରି ସେ ସାଙ୍ଗେ ସାଙ୍ଗେ ତଳକୁ ଆସିଲେ ଏବଂ ଟେକ୍‌ସିରେ ଉତ୍ତର ପୂର୍ବ କୋଣକୁ ଚାଲିଗଲେ ।

ସେହି ପଥରେ ବାବାଜୀଙ୍କ ଗୁମ୍ଫା କେଉଁଠି ଅଛି ପଚାରି ବୁଝି-ନେଲେ । ସ୍ଥାନଟି ଅତି ମନୋରମ । ଗୁମ୍ଫାପାଖରେ ଆପେଲ ପେଏଡା, ଆରକୋଟ୍ ଫଳରେ ପୁଷ୍ପରେ ଦୃଶ୍ୟ ଅତି ମନୋରମ ଓ ଦେବଭୂମି ସଦୃଶ । ସ୍ୱାମିଜୀ ଦୁଇଶହ ପାହାଚ ଉପରକୁ ଗଲେ । ଯିବାପରେ ଅନୁଭବ କଲେ ତାଙ୍କ ଦେହ ବେଦନାରେ ଭରି ଯାଇଛି । ସେ ଭାବିଲେ ବୋଧହୁଏ ଆଉ ଉପରକୁ ଉଠି ପାରିବେ ନାହିଁ । ଏହିପରି ଚିନ୍ତାକରି ସେହି ପାହାଚ ଉପରେ ଧ୍ୟାନରେ ବସିଗଲେ । ଦୁଇ ମିନିଟ ମଧ୍ୟରେ ଧ୍ୟାନ କରୁଁ କରୁଁ ଅନାହତ ଧ୍ୱନି ମଧ୍ୟରେ ବାବାଜୀଙ୍କ ଧୀର କଣ୍ଠସ୍ୱର ତାଙ୍କ କାନ ମଧ୍ୟରେ ପ୍ରବେଶ କଲା । ସେ କହିଲେ— 'କାହିଁକି ଏତେ କଷ୍ଟକରି ଆସିଲୁ । ମୁଁ ସର୍ବତ୍ର ବିରାଜମାନ । ମୁଁ କଟକ ଆଶ୍ରମରେ ଦୁଇଥର ଦର୍ଶନ ଦେଇ ସାରିଛି । ଏଠାରେ ଗୁମ୍ଫା ମଧ୍ୟରେ ମୋତେ ପାଇବୁ ନାହିଁ । ଏଠାରେ

ବସି କିଛି ବିଶ୍ରାମ କରି ଚାଲିଯାଅ ; ଅଧଘଣ୍ଟା କାଳ  ସ୍ୱାମିଜୀ ଧ୍ୟାନ କରି ‘ଚାଇ ତିନିଥର ତାଙ୍କ ପ୍ରତ୍ୟକ୍ଷ କଣ୍ଠସ୍ୱର ଶୁଣିପାରି ସେଠାରୁ ସେ ଓହ୍ଲାଇ ଚାଲିଆସିଲେ ।

## କ୍ରିୟାଯୋଗ ଆଚାର୍ଯ୍ୟର ଭୂମିକା

୧୯୫୦ ମସିହାରେ ପରମହଂସ ଯୋଗାନନ୍ଦଙ୍କ ନିର୍ଦ୍ଦେଶ ପାଇ ସ୍ୱାମିଜୀ କ୍ରିୟାଯୋଗର ଆଚାର୍ଯ୍ୟ ଭବରେ ଯୋଗଦୀକ୍ଷା ପ୍ରଦାନ କରିବାରେ ବ୍ରତୀ ହୋଇଥିଲେ । ପରମହଂସ ଯୋଗାନନ୍ଦ ସ୍ୱାମିଜୀଙ୍କର ନିବକଳ୍ପ ଅବସ୍ଥାର ସମ୍ବାଦ ପାଇ ଯାଇଥିଲେ । ସେ କେତେକ ଆମେରିକାନ୍ ଶିଷ୍ୟଙ୍କୁ ପଠାଇଥିଲେ ସ୍ୱାମିଜୀଙ୍କ ନିକଟକୁ ତାଙ୍କର ପ୍ରକୃତ ସାଧନ ଅବସ୍ଥା ଜାଣିବା ପାଇଁ । ସ୍ୱାମିଜୀ ଲେଖକଙ୍କ ନିକଟକୁ ନିର୍ବିକଳ୍ପ ଅବସ୍ଥା ସମ୍ପର୍କରେ ସୂଚନା ଏକ କେସେଟ୍‌ରେ ବିଦେଶରୁ କରୁଣା କରି ପଠାଇଥିଲେ । ସେଥିରେ କୁହାଯାଇଛି— ଯେତେବେଳେ ସଲୀନ ମାନସ ଅବସ୍ଥା ଆସିବ, ନଦୀ ମଧ୍ୟରେ ବୁଡିଗଲେ ଯେପରି ଆଉ ମସ୍ତିସ୍କ ଦେଖାଯିବ ନାହିଁ ସେହିପରି ଅତିମାନସ ବା ମନାତୀତ ଅବସ୍ଥା ଉପଲବ୍ଧି ହେବ, ସେହି ଅବସ୍ଥା ହିଁ ନିର୍ବିକଳ୍ପ, ନିର୍ଗୁଣ ଓ ତୁରୀୟ ଅବସ୍ଥା, ଏହାହିଁ ଅବାଙ୍ଗ ମାନସ ଗୋଚର ଅବସ୍ଥା । ଏହାକୁ ବାକ୍ୟ ଦ୍ୱାରା, ଭବଦ୍ୱାର ଜ୍ଞାନଦ୍ୱାରା ପ୍ରକାଶ କରିବା ସମ୍ଭବ ନୁହେଁ । ସ୍ୱାମିଜୀଙ୍କର ୪୧ ବର୍ଷ ବୟସରେ ନିର୍ବିକଳ୍ପ ଅବସ୍ଥାର ଆସ୍ୱାଦନ ହୋଇ ସାରି-ଥିଲା । ଏହି ଭବାତୀତ, ତ୍ରିଗୁଣ ରହିତ, ନାଡ଼ୀକ୍ରିୟା ରହିତ ସ୍ଥିତି ପ୍ରାପ୍ତ ହୋଇଥିଲେ । ସମସ୍ତ ଜୀବଭବର ଶେଷ ହେବାପରେ ନ ସ୍ଥାନଂ, ନ ମାନଂ, ନଚ ନାଦ ବିନ୍ଦୁଂ, ନ ରୂପଂ, ନ ରେଖା, ନଚ ଧାତୁ ବର୍ଣ୍ଣଂ, ଅର୍ଥାତ୍

ନାଦ ବିନ୍ଦୁ କଳା କାଷ୍ଠାଦି ରୂପେଣ ପରିଣାମ ରହିବ ନାହିଁ । ସମସ୍ତ ଚଞ୍ଚଳତାର ଅତିକ୍ରମ ପରେ ଏହି ଅବସ୍ଥା ଆସିଥାଏ । ଏହା ସ୍ୱରୂପର ଅବସ୍ଥା । ସ୍ୱାମିଜୀ ଏହି ଅବସ୍ଥା ଲାଭ ପରେ ସଦ୍‌ଗୁରୁର ଭୂମିକା ଗ୍ରହଣ କରିଥିଲେ ।

'ବୈଜ୍ଞାନିକ କ୍ରିୟାଯୋଗ ପଦ୍ଧତି' ଗ୍ରନ୍ଥରେ ସ୍ୱାମୀ ହରିହରା- ଉଲ୍ଲେଖ କରିଛନ୍ତି– ଆମର ଯେତେ ଅବଧାରା ତାହା ସମ୍ବନ୍ଧ କରିପାରିଲେ ମନୁଷ୍ୟ ମନୋବୁଦ୍ଧି ଅହଙ୍କାର ଚିତ୍ତ ଅତିକ୍ରମ କରି ଜୀଭାବ ଓ ବିଶ୍ୱଭାବ ଉପରକୁ ଉଠିଯାଇ ପାରେ । ସଦଗୁରୁ ନିର୍ଦ୍ଦେଶ ଓ ଦିଗ୍‌ଦର୍ଶନ ଲାଭକରି ଯଦି ସାଧକ ଊର୍ଦ୍ଧ୍ୱ ତାଳୁଠାରୁ ପ୍ରବେଶ କରି ପନିଆଲ ଗ୍ଲାଣ୍ଡରେ ପ୍ରବେଶ କଲେ ଜ୍ୟୋତି ମଧ୍ୟରେ ଅନୁ- ପ୍ରବିଷ୍ଟ ହେଇ ନିଜର ଦେହବୋଧ ରହିବ ନାହିଁ । ସାଧକ ଏହି ଅବସ୍ଥା ପ୍ରାପ୍ତି ହେଲେ ବିଶ୍ୱବୋଧ ହରାଇବ, ଦେହବୋଧ ହରାଇବ, ଏହି ସ୍ପନ୍ଦହୀନ ଅବସ୍ଥା (Pulselessness state) ପହଞ୍ଚିବ । ସାଧକ ବ୍ରହ୍ମାନନ୍ଦରେ ସଲୀନ ହୋଇଯାଏ– ଏହାହିଁ ତୃତୀୟ, ନିର୍ଗୁଣ ଅବସ୍ଥା ଏହି ଅବସ୍ଥାର ବର୍ଣ୍ଣନା ଈଶ ଉପନିଷଦରେ ଅଛି–

'ସ ପର୍ଯ୍ୟଗାତ୍ ଶୁକ୍ରଂ ଅକାୟଂ ଅବ୍ରଣଂ ଅସ୍ନାବିରଂ
ଶୁଦ୍ଧଂ ଅପାପବିଦ୍ଧମ୍ । କବିଃ ମନୀଷୀ ପରିଭୂଃ
ସ୍ୱୟମ୍ଭୂଃ ଯଥାତଥ୍ୟତଃ ଅଥାନ୍ ବ୍ୟଦଧାତ୍ ଶାଶ୍ୱତୀଭ୍ୟ ସମାଭ୍ୟଃ ।
(ଈଶ-୮)

'ସଃ ପର୍ଯ୍ୟଗାତ୍' ଅର୍ଥ ହେଲା ସେ ସର୍ବତ୍ର ବ୍ୟାପ୍ତ ଅଛନ୍ତି । 'ଶୁକ୍ରଂ' ଅର୍ଥ ହେଲା ଜ୍ୟୋତିଷ୍ମାନ । 'ଅକାୟଂ' ଅର୍ଥ ହେଲା ଅଶରୀର ।

'ଅସ୍ନାବିରଂ' ଅର୍ଥହେଲା ସ୍ନାୟୁହୀନ । ସେ ହେଉଛନ୍ତି ଅରୂପ । 'ଶ୍ୱେତାଶ୍ୱତରୋପନିଷଦ' ମତରେ ସେ ହେଉଛନ୍ତି— ଅପାଣି ପାଦଃ ଜବନଃ ଗହୀତା । ପଶ୍ୟତ୍ୟଚକ୍ଷୁଃ ସଃ ଶୃଣୋତ୍ୟକର୍ଣ୍ଣଃ ।' ତାଙ୍କର ହାତ ନାହିଁ । କିନ୍ତୁ ସେ ଗ୍ରହଣ କରି ପାରନ୍ତି । ତାଙ୍କର ପାଦ ନଥିଲେ ମଧ୍ୟ ସେ ଚାଲି ପାରନ୍ତି । ତାଙ୍କର ଆଖି ନଥିଲେ ମଧ୍ୟ ସେ ଦେଖିପାରନ୍ତି । ତାଙ୍କର କାନ ନ ଥିଲେ ମଧ୍ୟ ସେ ଶୁଣି ପାରନ୍ତି । କ'ବିଃ ଶବ୍ଦର ଅର୍ଥ ହେଲା ସର୍ବଦ୍ରଷ୍ଟା ଯେ ଆଗତ ଭବିଷ୍ୟତର ଜ୍ଞାତା । 'ମନୀଷୀ' ଅର୍ଥ ସର୍ବଜ୍ଞ । 'ସ୍ୱୟମ୍ଭୂ' ଅର୍ଥ ହେଲା ଯେ ନିଜକୁ ଜନ୍ମ ଦେଇଥାନ୍ତି । ଅନନ୍ତ କାଳ ବକ୍ଷରେ ବିଭିନ୍ନ ବସ୍ତୁ ଗୁଡ଼ିକୁ ଯେ ଯେମିତି ରହିବା କଥା ସେ ତାକୁ ସେମିତି ଗଢ଼ି ରଖିଛନ୍ତି ।

ପ୍ରକୃତରେ ନିର୍ବିକଳ୍ପ ଅବସ୍ଥା ଅକାୟଂ ଅବସ୍ଥା— ଶରୀର ବୋଧ ଏଥିରେ ସମ୍ପୂର୍ଣ୍ଣ ଚାଲିଯାଏ, ବିଶ୍ୱବୋଧ ଚାଲିଯାଏ । ସ୍ୱାମିଜୀ ଦିନ ପରେ ଦିନ ଧ୍ୟାନ କରି ଏହି ଚରମ ଅବସ୍ଥା ଲାଭ କରିଥିଲେ । ପରମହଂସ ଯୋଗାନନ୍ଦ ଦୁଇଜଣ ଆମେରିକା ଶିଷ୍ୟଙ୍କୁ ସ୍ୱାମିଜୀଙ୍କ ଏହି ପରମ ଅବସ୍ଥା ଦର୍ଶନ ପାଇଁ ପଠାଇଥିଲେ । କହିଥିଲେ ପୁରୀ କରାର ଆଶ୍ରମର ବ୍ରହ୍ମଚାରୀ ରବିନାରାୟଣଙ୍କର ନିର୍ବିକଳ୍ପ ସମାଧି ଦର୍ଶନ କରି ଆସ । କଲିକତାରୁ ସେମାନେ କରା'ର ଆଶ୍ରମକୁ ଟେଲିଗ୍ରାମ କରିଥିଲେ ଯେ ସେମାନେ ତାଙ୍କୁ ଦର୍ଶନ କରିବାକୁ ଆସୁଛନ୍ତି । ସେତେବେଳେ ସ୍ୱାମିଜୀ କଲିକତାରେ ଥିଲେ । ସେମାନେ କରାର ଆଶ୍ରମରୁ ସ୍ୱାମିଜୀଙ୍କୁ ଖୋଜି ନ ପାଇ ପୁଣି କଲିକତା ଫେରିଗଲେ । ସେମାନେ କଲିକତାର ସ୍ୱାମିଜୀଙ୍କ ଠିକଣା ଅନୁସାରେ ତାଙ୍କୁ ପାଇ ପରମହଂସ ଯୋଗାନନ୍ଦଙ୍କ ଗୃହକୁ ତାଙ୍କୁ ନେଇ ଆସିଲେ । ସନନ୍ଦଲାଲ ଘୋଷଙ୍କ ୪ ନମ୍ବର

ଗରପାର ଘୋଡ଼ରେ ସେ ଆସି ପହଞ୍ଚିଲେ । ସନନ୍ଦଲାଲ ଘୋଷ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଯେଉଁ ଉପର ତାଲାରେ ପରମହଂସ ଯୋଗାନନ୍ଦଙ୍କର ସମାଧି ଅବସ୍ଥା ହୋଇଥିଲେ ସ୍ୱାମିଜୀଙ୍କୁ ସେହି ସ୍ଥାନକୁ ନେଇଗଲେ । ଆମେରିକାର ଦଶଜଣ ଶିଷ୍ୟ ମଧ୍ୟରେ ଥିଲେ ଜଣେ ଡ଼ାକ୍ତର ଓ ଅନ୍ୟଜଣକ ବୈଜ୍ଞାନିକ । ସେମାନେ ଯନ୍ତ୍ର ଖୋଲି ବସିଲେ । ସମାଧି ଅବସ୍ଥା କ'ଣ ଓ ତାପରେ ତାହାର ଅବସ୍ଥା ଜାଣିବା ପାଇଁ ସେମାନେ ଉଦଗ୍ରୀବ ହୋଇ ବସିଲେ । ପରେ ସ୍ୱାମିଜୀଙ୍କ ସମାଧି ଅବସ୍ଥା ଧ୍ୟାନ କରିବା ସଙ୍ଗେ ସଙ୍ଗେ ଆସିଗଲା । ଜଗତବୋଧ ଓ ଦେହ-ବୋଧ ଚାଲିଗଲା । ପରେ ଧୀରେ ଧୀରେ ଜାଗ୍ରତ ଅବସ୍ଥା ଆସିଲା, ସେମାନେ ପଚାରିଲେ କୁହନ୍ତୁ କିପରି ଆପଣ ଅନୁଭବ କରୁଛନ୍ତି, ସମାଧି କିପରି ଅବସ୍ଥା । ସେମାନେ ଇଂରାଜୀରେ ପଚାରିଲେ, ମାତ୍ର ସ୍ୱାମିଜୀ ଗଭୀର ସଲୀନ ଅବସ୍ଥା ଅତିକ୍ରମ କରି ପାରି ନଥିବାରୁ ସେ କିଛି ଉତ୍ତର ଦେଇ ପାରୁନଥିଲେ । ପରେ ସେମାନେ ଶରୀର ନିମ୍ନତି ପୁନଶ୍ଚ ପଚାରିଲେ–ସମାଧିରେ କେଉଁ ଅବସ୍ଥା ତାହା କୁହନ୍ତୁ । ସ୍ୱାମିଜୀଙ୍କ ନାଡ଼ୀ ଚାଲୁଥିଲା–ଏହା କିନ୍ତୁ ସମାଧି ଅବସ୍ଥା ନୁହେଁ ସମାଧି ଅବସ୍ଥାରେ ତ କିଛି କହିବା ସମ୍ଭବ ନୁହେଁ । ଧୀରେ ଧୀରେ ସ୍ୱାମିଜୀ କହିଲେ ବଙ୍ଗଳାରେ ଯେମିତି ଗୋଟିଏ ବୃଦ୍ଧାଙ୍ଗୁଳି, ଗୋଟିଏ କଦଳୀ ଭଳି ଗୋଟିଏ ଆଲୋକରେ ମୁଁ ଏବେ ରହିଛି । ଏହା ଦୁଇଦଳ ପଦ୍ମଠାରୁ ଟିକେ ଉପରେ । ଏହା କିନ୍ତୁ ଜୀବ ଅବସ୍ଥା ଉଚ୍ଚତର ସାଧକ ଅବସ୍ଥା, । ଅତ୍ମାନର ଗୋଚର ଅବସ୍ଥା, ଯେଉଁ ଅବସ୍ଥାରେ ସମସ୍ତ ଜୀବବୋଧର ସମାପ୍ତି–ସେହି ଅନୁଭବକୁ ବାକ୍ୟଦ୍ୱାରା ପ୍ରକାଶ କେବେ ସମ୍ଭବ ନୁହେଁ । କାରଣ ପରମେଶ୍ୱରଙ୍କର ଏହି ସ୍ୱରୂପ ଅବସ୍ଥା ମନ, ବୁଦ୍ଧିଗୋଚର ନୁହେଁ– ତାହା କେବଳ ନିମଜ୍ଜିତ ଅବସ୍ଥା । ସେଠାରେ କ୍ଷରଣଶୀଳ

ଶରୀର ଅକ୍ଷୟ ଶରୀର ନାହିଁ । ଦ୍ୱିଦଳ ପଦ୍ମ ପଛରେ Lymbic System ରେ ଅକ୍ଷୟ ଶରୀରରେ ଜ୍ଞାନ ସେଠାରେ ଥାଏ । ସେହି ସଂସ୍କାରକୁ ଅତିକ୍ରମ କରିବାକୁ ହେବ । ସ୍ୱାମିଜୀଙ୍କ ଠାରୁ ଏହି ଅପୂର୍ବ ତଥ୍ୟ ତାଙ୍କ ପ୍ରେରିତ କେସେଟ୍‌ରୁ ମୁଁ ସଂଗ୍ରହ କରିଛି । ଏହା ମୋର ଜୀବନର ଏକ ଅମୂଲ୍ୟ ସମ୍ପଦ ।

ପରମହଂସ ଯୋଗାନନ୍ଦ ଦୁଇଗୁରୁ ବୈନାଚେୟଣଙ୍କ ଏହି ପରମ ନିର୍ବିକଳ୍ପ ଅବସ୍ଥାର ପରିଚୟ ଅବଗତ ହେଲ ପରେ ଅକ୍ଟୋବର ୬, ୧୯୫୧ ତାରିଖରେ ପତ୍ରଦ୍ୱାର ଲେଖିଲେ– 'I give you permission to give Kriya-Yoga to those who are truly in earnest " ଅବଶ୍ୟ ପାଶ୍ଚାତ୍ୟ ଦେଶ ପାଇଁ ଉଦ୍ଦିଷ୍ଟ ଶାରୀରିକ କ୍ରିୟା ଯଥା Tension Exercise ହଂସ ସାଧନା ଓ ଓଁକାର ସାଧନା ଦେବାପରେ ଏହି କ୍ରିୟାଯୋଗ ସାଧନା ଦେବାପାଇଁ ସେ ନିର୍ଦ୍ଦେଶ ଦେଇଥିଲେ । ସ୍ୱାମିଜୀ ଏହା ସ୍ୱୀକାର କରି ନେଇ-ଥିଲେ । ପରମହଂସ ଯୋଗାନନ୍ଦଙ୍କ ଯୋଗଦା ପାଠ୍ୟକ୍ରମ ସ୍ୱାମିଜୀ ଶେଷ କରିଥିଲେ । ଏହି ଯୋଗଦା କ୍ରିୟଯୋଗ ସାଧନା ପାଠ୍ୟକ୍ରମ ଓ ସମସ୍ତ ଯୋଗଦା ପତ୍ରାଗ୍ରର ପାଠ୍ୟକ୍ରମର ସମସ୍ତ ପତ୍ର ସୌଭାଗ୍ୟ ବଶତଃ ମୁଁ ମଧ୍ୟ ଗଭୀର ଅଧ୍ୟୟନ କରିବାର ସୁଯୋଗ ସ୍ୱାମିଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କଲପରେ ଲଭ କରିଛି । ଏହା ପ୍ରକୃତରେ ପ୍ରେରଣା ଦାୟକ । ଯେଉଁମାନେ ସଦ୍‌ଗୁରୁଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବାରେ ସୁଯୋଗ ବା ଉଚ୍ଚାଙ୍ଗ ସାଧକମାନଙ୍କ ମାର୍ଗଦର୍ଶନ ପାଇ ପାରନ୍ତି ନାହିଁ, ସେମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥାଏ । ମାତ୍ର ଏହାକୁ ପ୍ରକୃତ କ୍ରିୟାଯୋଗ କହିବା ମିଥ୍ୟାଗ୍ରହ । କାରଣ କ୍ରିୟାଯୋଗ ଏକ ଗୋପନୀୟ ଗୁରୁ ପରମ୍ପରା

କ୍ରମେ ପ୍ରଦତ୍ତ ମହାନ ସାଧନା । ପତ୍ରରେ ଏହା ସମ୍ପୂର୍ଣ୍ଣ ବ୍ୟକ୍ତ ହେବା ସମ୍ଭବ ନୁହେଁ । ଯେଉଁମାନେ ପାଠ୍ୟକ୍ରମ ଅଧ୍ୟୟନ କରନ୍ତି ସେମାନେ ଉଚ୍ଚାଙ୍ଗ ସାଧକଙ୍କର ଦିଗ୍‌ଦର୍ଶନ ଲାଭ କରି ସାଧନାରେ ଅଗ୍ରସର ହେବା ଉଚିତ ।

ସ୍ୱାମିଜୀ ତେଣୁ ଲେଖିଛନ୍ତି— 'ମୁଁ ଏହି ସାଧନ କୌଶଳ ନିଜେ ସମ୍ପୂର୍ଣ୍ଣ ଉପଲବ୍ଧି କରି ପ୍ରତି ଶିଷ୍ୟର ଦେହ ଶୋଧନ କରି ଅଙ୍ଗ ପ୍ରାୟଶ୍ଚିତ କରି ସର୍ବାଙ୍ଗ ଓ ମେରୁଦଣ୍ଡ ଶୋଧନ କରି ତାହା ମଧ୍ୟରେ ଭଗବଦ ଅନୁଭୂତି ଓ କାର୍ମିଲ୍ୟବାସିନୀ ପରାଶକ୍ତିର ଅନୁଭୂତି ଦେଇ ବିଶ୍ୱବାସୀଙ୍କୁ ଭଗବଦ୍ ଆସ୍ୱାଦନ ପଥରେ ନେବାପାଇଁ ଚେଷ୍ଟା କରୁଛି । ତେଣୁ ଏହା ଗୁରୁମୁଖୀ ବିଦ୍ୟା । ଶାସ୍ତ୍ର ଅଧ୍ୟୟନ କରି ଏହାର ଯଥାର୍ଥ ଆସ୍ୱାଦନ ପାଇବା ସମ୍ଭବ ନୁହେଁ ।

ବ୍ରହ୍ମଚାରୀ ରବିନାରାୟଣ ଥିଲେ ବ୍ରହ୍ମବିଦ୍ ସାଧକ । ପରମହଂସ ଯୋଗାନନ୍ଦଜୀଙ୍କ ଯୋଗଦା ପ୍ରକ୍ରିୟାର ପ୍ରାଥମିକ ପଦ୍ଧତି ସେ ଶିଖାଉଥିଲେ ମଧ୍ୟ ଶ୍ରୀ ଯୁକ୍ତେଶ୍ୱରଜୀ ଓ ଶ୍ରୀ ସାନ୍ୟାଲ ମହାଶୟଙ୍କ ଠାରୁ ଯେଉଁ ପଦ୍ଧତି ସେ ଶିକ୍ଷା କରିଥିଲେ ସାଧନା ଦିଗ୍‌ଦର୍ଶନ କାଳରେ ତାହା ମଧ୍ୟ ସେ ଉପଯୁକ୍ତ ସାଧକ ଗଣଙ୍କୁ ଶିକ୍ଷା ଦେଉଥିଲେ । ପ୍ରତ୍ୟେକ ସିଦ୍ଧ ପୁରୁଷ ତାଙ୍କର ନିଜସ୍ୱ ସାଧନ ପ୍ରକ୍ରିୟାରେ ଶିଷ୍ୟକୁ ଉତ୍‌ଥାନର ପଥରେ ନେଇଯାଆନ୍ତି । କ୍ରିୟାଯୋଗ ସାଧକ ପରମ୍ପରାରେ ଯେଉଁ ବିଭିନ୍ନ ସିଦ୍ଧାଗ୍ରଣୀଗଣ ମାର୍ଗଦର୍ଶନ ଦେଇଛନ୍ତି, ସେମାନଙ୍କ ମୂଳତତ୍ତ୍ୱ ଏକ ହେଲେ ମଧ୍ୟ ଦେଶ କାଳ ଅନୁଯାୟୀ ସେମାନେ କିଛି ପରିବର୍ତ୍ତନ ଆଣିଥିବା ଲକ୍ଷ୍ୟ କରାଯାଏ । ପରମହଂସ ଯୋଗାନନ୍ଦ ତାହାହିଁ କରି-

ଥିଲେ । ଭାରତୀୟ ସଂସାର ଓ ପରିମଣ୍ଡଳରେ ଏହାର ଅନାବଶ୍ୟକତା ବହୁ ସାଧକ ଅନୁଭବ କଲାପରେ, ସ୍ୱାମିଜୀ ଏହା ଉପରେ ପରବର୍ତ୍ତୀ କାଳରେ ଆଉ ବିଶେଷ ଗୁରୁତ୍ୱ ଦେଇନଥିଲେ । ଲେଖକ ମଧ୍ୟ ପ୍ରାଥମିକ କାଳରେ ଯୋଗଦା ପଦ୍ଧତିରେ ଧ୍ୟାନ କରି ଗଭୀରତର ଅବସ୍ଥା ପ୍ରାପ୍ତି ପରେ ଏହା ଆଉ ସାଧନା କରିବା ଅନାବଶ୍ୟକ ବୋଲି ଅନୁଭବ କରିଥିଲି । ସ୍ୱାମିଜୀଙ୍କ ପ୍ରକ୍ରିୟାର ବିଶେଷତ୍ୱ ହେଉଛି ସାଧକ ମଧ୍ୟରେ ଶକ୍ତି ସଂଚାର କରିବା । ଏହି ଶକ୍ତିସଂଚାର ପ୍ରକ୍ରିୟାରେ ସେ ସାଧକକୁ ଗଭୀର ଧ୍ୟାନ ଅବସ୍ଥାକୁ ନେଇ ଯାଆନ୍ତି । ଫଳରେ ବହିରଙ୍ଗ ପଦ୍ଧତି ଏଠାରେ ଅନାବଶ୍ୟକ ହୋଇପଡ଼େ ।

ସ୍ୱାମିଜୀ 'ବୈଜ୍ଞାନିକ କ୍ରିୟାଯୋଗ ପଦ୍ଧତି' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । – ୧୯୪୮ ମସିହାରେ ସମ୍ପୂର୍ଣ୍ଣ ଭାବରେ ନିର୍ବିକଳ୍ପ ସମାଧି ଅବସ୍ଥା ଲାଭ କରିବା ସମୟଠାରୁ ମୁଁ ଶିଷ୍ୟମାନଙ୍କ ମୂଳାଧାରରୁ ସହସ୍ରାର ପର୍ଯ୍ୟନ୍ତ ଏପରିକି ଶୂନ୍ୟରେ ବ୍ରହ୍ମଲୋକ ପର୍ଯ୍ୟନ୍ତ ଏହି କମ୍ପନ ଦେଇ ପାରୁଛି । ନିର୍ବିକଳ୍ପ ସମାଧି ଅବସ୍ଥା ହେବା ପର୍ଯ୍ୟନ୍ତ ମୋତେ ଏହି ଶକ୍ତି ସଂଚାର କରିବାର କୌଶଳ ମଧ୍ୟ ଜଣା ନ ଥିଲା । ପ୍ରକୃତରେ ପରମହଂସ ଯୋଗାନନ୍ଦଙ୍କ ପରେ ବ୍ରହ୍ମଚାରୀ ରବିନାରାୟଣ କ୍ରିୟାଯୋଗ ସାଧନ ଶକ୍ତିର ଶ୍ରେଷ୍ଠ ଉତ୍ତରାଧିକାରୀ ହୋଇ ପାରିଥିଲେ । ଗୁରୁସ୍ଥାନରେ ଅଧିଷ୍ଠିତ ଏହି ମହାନ ସାଧକ ପ୍ରତ୍ୟେକ ଶିଷ୍ୟ ସହ ଧ୍ୟାନ କରି ତାଙ୍କର ଉତ୍ଥାନ ପାଇଁ ରକ୍ତବିନ୍ଦୁ ଢ଼ାଳି ଦେଇ ଆସିଛନ୍ତି । ଫଳରେ କ୍ରିୟାଯୋଗ ସାଧନା ଧାରାରେ ଏକ ନବ ଜାଗରଣ ସୃଷ୍ଟି ହୋଇଛି । ସମଗ୍ର ବିଶ୍ୱର ଯୋଗଦା ସାଧକ ଗଣ ସ୍ୱାମିଜୀଙ୍କ ମାର୍ଗ ପ୍ରଦର୍ଶନ ଅନୁସାରେ ଧ୍ୟାନ ନ କଲା ପର୍ଯ୍ୟନ୍ତ ସେମାନଙ୍କ କ୍ରିୟା ସାଧନା

ସମ୍ପୂର୍ଣ୍ଣ କ୍ରିୟାଶୀଳ ହୋଇ ପାରିବା ସମ୍ଭବ ନୁହେଁ ବୋଲି ବହୁ ପାଠ୍ୟକ୍ରମ ଅଭ୍ୟସ୍ତ ସାଧକଙ୍କ ସଂପର୍କରେ ଆସି ମୋର ହୃଦ୍‌ବୋଧ ହୋଇଛି । ବର୍ଷ ବର୍ଷ ଧରି ଯୋଗଦା ଧ୍ୟାନରେ ଅଭ୍ୟସ୍ତ ବହୁ ସାଧକ ସ୍ୱାମିଜୀଙ୍କ ସଂସ୍ପର୍ଶରେ ଏପରିକି ମୋର ପ୍ରତ୍ୟକ୍ଷ ସଂପର୍କରେ ଆସିବା ପରେ ସାଧନା ପଥରେ ଦ୍ରୁତ ଅଗ୍ରସର ହୋଇଛନ୍ତି । କ୍ରିୟାଯୋଗର ଅନ୍ୟ ସମସ୍ତ ସଂପ୍ରଦାୟ ମଧ୍ୟ ଏହି ଶକ୍ତି ସଞ୍ଚାର ଲାଭକରି ଯଥାର୍ଥ କ୍ରିୟାର ଆସ୍ୱାଦନ ପାଇଥିବା ମୁଁ ଅନୁଭବ କରିଛି ।

ପରମହଂସ ଯୋଗାନନ୍ଦ ବିଦେଶରେ ଆଜୀବନ ଥିଲେ ମଧ୍ୟ ଗୁରୁପୀଠ କଡ଼ାର ଆଶ୍ରମ ପ୍ରତି ଥିଲା ତାଙ୍କର ଗଭୀର ସମ୍ମାନ । ଯୋଗଦା କାର୍ଯ୍ୟ କରୁଥିବାରୁ ଏହା କ୍ରମଶଃ କଡ଼ାର ଆଶ୍ରମ ନାମ ସହିତ ଯୋଗଦା ଆଶ୍ରମ ନାମରେ ମଧ୍ୟ ପରିଚିତ ହୋଇଥିଲା । ମାତ୍ର ଶ୍ରୀଯୁକ୍ତେଶ୍ୱରଜୀଙ୍କ ଟ୍ରଷ୍ଟଡ଼ିଡ୍ ଯୋଗୁଁ ଏହା ଯୋଗଦା ସହିତ ଅଙ୍ଗୀଭୂତ ହୋଇ ନ ପାରି ସ୍ୱାତନ୍ତ୍ର୍ୟ ରକ୍ଷା କରି ଆସିଥିଲା । ୧୯୫୨ ମସିହାରେ ପରମହଂସ ଯୋଗାନନ୍ଦଙ୍କ ମହା ସମାଧି ପରେ ଯୋଗଦାରେ ୧୯୫୫ ପର୍ଯ୍ୟନ୍ତ ଶ୍ରୀ ଶ୍ରୀ ରାଜର୍ଷି ଜନକାନନ୍ଦ ଓ ୧୯୫୫ ପରେ ସିଷ୍ଟର ଦୟା ଯୋଗଦାର ଉତ୍ତରାଧିକାରୀ ହୋଇଥିଲେ । ମାତ୍ର ପରମହଂସ ଯୋଗାନନ୍ଦଙ୍କ ପରେ ସ୍ୱାମୀ ସତ୍ୟାନନ୍ଦ ଗିରି ହୋଇଥିଲେ କଡ଼ାର ଆଶ୍ରମର ସଭାପତି । ବ୍ରହ୍ମଚାରୀ ରବିନାରାୟଣ ଯୋଗଦା ସହ ସଂପୃକ୍ତ ଥିଲେ ମଧ୍ୟ ସ୍ୱାମୀ ସତ୍ୟାନନ୍ଦ ଗିରିଙ୍କର ପ୍ରତିନିଧି ଭାବରେ କଡ଼ାର ଆଶ୍ରମ ପରିଚାଳନା କରୁଥିଲେ ।

କଡ଼ାର ଆଶ୍ରମ ପରିସର ମଧ୍ୟରେ ଯୋଗଦା କାର୍ଯ୍ୟ ସମ୍ପାଦିତ ହେଉଥିଲା । ଗୁରୁ ପୀଠ ପ୍ରତି ସମ୍ମାନ ଦୃଷ୍ଟିରୁ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଶିଷ୍ୟ-

ଗଣ, ପରମହଂସ ଯୋଗାନନ୍ଦଙ୍କ ଶିଷ୍ୟ ତଥା ଯୋଗଦା ସତସଙ୍ଗ ସମାଜ ଆର୍ଥିକ ସହାୟତା ଦେଇ ଏହି ଆଶ୍ରମକୁ ସଂରକ୍ଷଣ କରୁଥିଲେ । ସମଗ୍ର ଭାରତରେ କ୍ରିୟାବାନ୍ ସାଧକଗଣ ଏହି ଆଶ୍ରମରୁ ତଥା ସ୍ୱାମୀ ସତ୍ୟାନନ୍ଦ ଗିରିଙ୍କ ଠାରୁ ସର୍ବଦା ଦିଗ୍‌ଦର୍ଶନ ଲାଭ କରୁଥିଲେ । ପରମହଂସ ଯୋଗାନନ୍ଦଙ୍କ ମହାସମାଧି ପରେ ଏହି ବ୍ରହ୍ମବିଦ୍ ନିର୍ବିକଳ୍ପ ଯୋଗୀ ବ୍ରହ୍ମଗ୍ରାସ ରବିନାରାୟଣ ହିଁ ପରମହଂସ ଯୋଗାନନ୍ଦଙ୍କର ଆଧ୍ୟାତ୍ମିକ ସାଧନାର ପ୍ରକୃତ ଉତ୍ତରାଧିକାରୀ ଯୋଗୀଗୁରୁର ଭୂମିକା ଯଥାର୍ଥ ଭାବରେ ସଂପାଦନ କରିଥିଲେ । ୧୯୫୨ ମସିହାରୁ ୧୯୫୮ ପର୍ଯ୍ୟନ୍ତ ସେ ଭାରତ ବିଭିନ୍ନ ସ୍ଥାନ ଭ୍ରମଣ କରି ପରମହଂସ ଯୋଗାନନ୍ଦଙ୍କ କାର୍ଯ୍ୟ କରୁଥିଲେ ଏବଂ ସମଗ୍ର ଭାରତର କ୍ରିୟାବାନଗଣଙ୍କୁ ସାଧନା ପଥରେ ସାହାଯ୍ୟ କରୁଥିଲେ । ସେହି ଦିନଠୁ ସ୍ୱାମିଜୀ ପରମହଂସ ଯୋଗାନନ୍ଦଙ୍କ ସାଧନା ଧାରାର ଶ୍ରେଷ୍ଠ ଉତ୍ତର ସାଧକ ଭାବରେ କାର୍ଯ୍ୟକରି ଆସୁଛନ୍ତି ।

୧୯୫୮ ଖ୍ରୀଷ୍ଟାବ୍ଦ ୨୭ ତାରିଖ ସେପ୍‌ଟେମ୍ବର ମାସରେ ସ୍ୱାମିଜୀଙ୍କ ଜୀବନରେ ଏକ ଅଲୌକିକ ଘଟଣା ଘଟିଥିଲା । ଏହିଦିନ ସ୍ୱାମିଜୀଙ୍କ ଇଷ୍ଟଦେବୀ ମହାଦେବୀ କାଳୀ ଜ୍ୟୋତିର୍ମୟ ସ୍ଥୂଳ ରୂପ ପରିଗ୍ରହ କରି ତାଙ୍କ ଆଗରେ ଆବିର୍ଭୂତ ହୋଇଥିଲେ । ସେତେବେଳେ ସ୍ୱାମିଜୀ ଥିଲେ ଧ୍ୟାନସ୍ଥ । ଯେଉଁ ମୂର୍ତ୍ତି ଦର୍ଶନ କରିଥିଲେ ସେହି ମୂର୍ତ୍ତି ହେଉଛି ସୌମ୍ୟା ଶ୍ୟାମା ମୂର୍ତ୍ତି । ବରାଭୟ ମୂର୍ତ୍ତିରେ ଦେବୀ ଆବିର୍ଭୂତ ହୋଇ ବିଶ୍ୱର ଆଧ୍ୟାତ୍ମିକ ଉତ୍‌ଥାନ ପାଇଁ ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ । କ୍ରିୟାଯୋଗ ସାଧନା ପରମ୍ପରା ପାଇଁ ଏହି ମହାଦେବୀ ସହାୟକ ହେବାପାଇଁ ତାଙ୍କୁ ଆଶୀର୍ବାଦ ଦେଇଥିଲେ । ସେହି ନୀଳ ଜ୍ୟୋତିର୍ମୟୀ ଦେବୀଙ୍କର ଭବ ରୂପକୁ ସ୍ୱହସ୍ତରେ ନିର୍ମାଣ କରି ସ୍ୱାମିଜୀ ଆଶ୍ରମ ମଧ୍ୟରେ ମୃଣ୍ମୟୀ ମୂର୍ତ୍ତି

ରୂପରେ ପ୍ରତିଷ୍ଠା କରିଥିଲେ । ସେହି ସୌମ୍ୟ ଶ୍ୟାମା ମୂର୍ତ୍ତି କଡ଼ାର ଆଶ୍ରମ ମଧ୍ୟରେ ଏ ପର୍ଯ୍ୟନ୍ତ ମଧ୍ୟ ପୂଜିତ ହୋଇ ଆସୁଛନ୍ତି ।

## ସ୍ୱାମୀ ହରିହରାନନ୍ଦ : ସନ୍ୟାସ ଗ୍ରହଣର ସ୍ମୃତି–

୧୯୫୯ ମସିହା ମେ ମାସ ୨୭ ତାରିଖରେ ନିଜ ଜନ୍ମଦିବସରେ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ବିଶ୍ୱବିଶ୍ରୁତ ସନ୍ୟାସୀ ଜଗଦଗୁରୁ ଭାରତୀ କୃଷ୍ଣଙ୍କଠାରୁ ବୈଦିକ ବିଧି ଅନୁଯାୟୀ ସନ୍ୟାସ ଗ୍ରହଣ କରିଥିଲେ । ସେହି ଦିନଠାରୁ ସେ ବ୍ରହ୍ମଚାରୀ ରବିନାରାୟଣ ନାମ ତ୍ୟାଗ କରି ସ୍ୱାମୀ ହରିହରାନନ୍ଦ ଗିରି ନାମରେ ପରିଚିତ ହୋଇଥିଲେ । ବ୍ରହ୍ମଚାରୀ ରବିନାରାୟଣଙ୍କ ବହୁଦିନରୁ ଏକ ଦିବ୍ୟ ବାସନା ଥିଲା ଯେ ଭାରତର ହିନ୍ଦୁଧର୍ମର ଶ୍ରେଷ୍ଠ ପ୍ରତିନିଧି ଜଗଦ୍‌ଗୁରୁ ଭାରତୀକୃଷ୍ଣଙ୍କଠାରୁ ସନ୍ୟାସ ଗ୍ରହଣ କରିବେ । ସେହି ଉଦ୍ଦେଶ୍ୟରେ ସେ ଶଙ୍କରାଚାର୍ଯ୍ୟ ମଠକୁ ଯାଇଥିଲେ । ମଠରେ ପହଞ୍ଚି ଶୁଣିଲେ ଯେ ଭାରତୀକୃଷ୍ଣ ବାହାରକୁ ଭ୍ରମଣ ଉଦ୍ଦେଶ୍ୟରେ ଯାଇଛନ୍ତି, କେତେବେଳେ ଫେରିବେ ଠିକଣା ନାହିଁ । ଏହି ସମ୍ବାଦ ଶୁଣି ସେ ହତାଶ ହେଲେ ଓ ଅତୃପ୍ତ ବାସନା ନେଇ ଜଗନ୍ନାଥ ମନ୍ଦିରକୁ ଜଗନ୍ନାଥ ଦର୍ଶନ ପାଇଁ ଯାତ୍ରାକଲେ ।

ଭାରତୀକୃଷ୍ଣଙ୍କ ସହ ସ୍ୱାମିଜୀଙ୍କ ସାକ୍ଷାତ ଓ ସନ୍ୟାସ ଗହଣ ବିବରଣ ଲେଖକ ଥରେ ତାଙ୍କୁ ପଚାରି ଯେପରି ସଂଗ୍ରହ କରିଥିଲା, ବର୍ତ୍ତମାନ ତାହାହିଁ ଏଠାରେ ଯଥାଯଥ ଭାବରେ ଉଲ୍ଲେଖ କରୁଛି । ବାଟରେ ଯିବା ସମୟରେ ଦେଖିଲେ ଜଣେ ଅତି ଗୌରବର୍ଣ୍ଣ ଦଣ୍ଡଧାରୀ ସନ୍ନ୍ୟାସୀ ପୁରୀର ବାଟ ଲୋକନାଥ ଆଗରେ ସମୁଦ୍ର କୂଳରୁ ଆସୁଛନ୍ତି ।

ତାଙ୍କ ସଙ୍ଗରେ ଆଉ ଜଣେ କମଣ୍ଡଳୁ ନେଇ ଓ ଆସନ ନେଇ ପଛେ ପଛେ ଆସୁଥାନ୍ତି । ସେମାନଙ୍କୁ ଦେଖି ସେ ହାତଯୋଡ଼ି ' ଓଁ ନମୋ ନାରାୟଣାୟ'– ଏହି କଥା ଉଚ୍ଚାରଣ କରି ମଥାନଇଲେ । ତା'ର ପ୍ରତ୍ୟୁତ୍ତରରେ ସେମାନେ ନାରାୟଣ, ନାରାୟଣ କହିଲେ । ସ୍ୱାମିଜୀ ଜଗନ୍ନାଥ ମନ୍ଦିର ପରିକ୍ରମା କରି ଜଗନ୍ନାଥ ଦର୍ଶନ କରି ମନ୍ଦିର ଚଉପଟରେ ବିଗ୍ରହମାନଙ୍କୁ ପ୍ରଣାମ କରି ଶ୍ରୀମନ୍ଦିର ପ୍ରଦକ୍ଷିଣ କରି ଆସିବା ସମୟରେ ଜଣେ ସନ୍ନ୍ୟାସୀ ଶ୍ରୀମତ୍ ସ୍ୱାମୀ ରାମକୃଷ୍ଣାନନ୍ଦଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସ୍ୱାମିଜୀ ତାଙ୍କୁ ପଚାରିଲେ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟଙ୍କ ସହିତ ସାକ୍ଷାତ ହୋଇଛି କି ? ସେ କହିଲେ ଅଧଘଣ୍ଟା ହେବ ଶଙ୍କର ଶ୍ରୀମତ୍ ଭାରତୀକୃଷ୍ଣ ମନ୍ଦିରରୁ ମଠ ଆଡକୁ ଗଲେଣି ! ସେହି ସମୟରେ ସେ ତାଙ୍କୁ ଦର୍ଶନ ଓ ପ୍ରଣାମ କରିଥିଲେ । ତାହା ଶୁଣି ସ୍ୱାମିଜୀଙ୍କର ମନ ଶଙ୍କରାଚାର୍ଯ୍ୟଙ୍କୁ ଦର୍ଶନ ପାଇଁ ବ୍ୟାକୁଳ ହୋଇଥିଲା । ଖୁବ୍ ଶୀଘ୍ର ରିକ୍ସାରେ ସ୍ୱାମିଜୀ ଶଙ୍କରାଚାର୍ଯ୍ୟଙ୍କ ମଠରେ ପହଞ୍ଚିଗଲେ । ଦୂରରେ ଦେଖିଲେ– ଯାହାଙ୍କୁ ସେ ବାଟରେ ଦେଖିଥିଲେ ସେହି ଉଜ୍ଜ୍ୱଳ ଗୌରବର୍ଣ୍ଣ ଦେବମୂର୍ତ୍ତି ଗଦି ଉପରେ ଉପବିଷ୍ଟ । ସେ ଚଞ୍ଚଳ ତାଙ୍କ ପାଖକୁ ଯାଇ ପ୍ରଣାମ କଲେ ।

ଶ୍ରୀମଦ୍ ଶଙ୍କର ଭାରତୀକୃଷ୍ଣ ତାଙ୍କୁ ଦେଖି ଗଭୀର ସ୍ନେହ ପ୍ରକାଶ କଲେ ଓ ଇଂରାଜୀରେ ପଚାରିଲେ– ' ତୁମେ କେଉଁଠି ରହୁଛ ? ସ୍ୱାମିଜୀ ମଧ୍ୟ ଇଂରାଜୀରେ ଉତ୍ତର ଦେଲେ– "ମୁଁ ଆପଣଙ୍କ ମଠର ନିକଟ-ବର୍ତ୍ତୀ ଶ୍ରୀଯୁକ୍ତେଶ୍ୱରଜୀଙ୍କ କଡ଼ାର ଆଶ୍ରମରେ ରହୁଛି ।" ସେ ପୁଣି ତାଙ୍କୁ ପଚାରିଲେ– "ତୁମର ନା'ମ କଣ ?" ସ୍ୱାମିଜୀ ଉତ୍ତର ଦେଲେ– "ମୋର ନାମ ବ୍ରହ୍ମଚାରୀ ରବି ନାରାୟଣ" । "କେତେ ବର୍ଷ ହେଲା

ଆଶ୍ରମରେ ରହିଲଣି'— ଶଙ୍କରାଚାର୍ଯ୍ୟ ପଚାରିଲେ । ସ୍ୱାମିଜୀ କହିଲେ— 'ପାଞ୍ଚ ବର୍ଷ ହେଲା ରହୁଛି । ଶଙ୍କରାଚାର୍ଯ୍ୟ ପୁଣି ପଚାରିଲେ-'ତୁମର ବାପାଙ୍କର ନାମ କ'ଣ ?' ସ୍ୱାମିଜୀ କହିଲେ— 'ବାପାଙ୍କର ନାମ ହରିପଦ ଭଟ୍ଟାଚାର୍ଯ୍ୟ ।' ତା'ପରେ ସେ କହିଲେ— ତୁମେ ତାହାହେଲେ ଭଟ୍ଟାଚାର୍ଯ୍ୟ, ତୁମେ ବ୍ରାହ୍ମଣ । ଆଚ୍ଛା— ତୁମର ଘର କେଉଁଠି ? ସ୍ୱାମିଜୀ ଉତ୍ତର ଦେଲେ- ବଙ୍ଗଦେଶ ନଦିଆରେ ମୋର ଘର ଏହାପରେ ସାଧନା ସମ୍ପର୍କରେ ଓ ଯୋଗଦା ସମ୍ପର୍କରେ ବହୁ ଆଲୋଚନା ହେଲା । ଶଙ୍କରାଚାର୍ଯ୍ୟଙ୍କର ଇଚ୍ଛା ଥିଲା ସେ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ଗୋବର୍ଦ୍ଧନ ପୀଠର ଶଙ୍କର ଦାୟିତ୍ୱ ଗ୍ରହଣ କରିବେ । ମାତ୍ର ସ୍ୱାମିଜୀ କହିଲେ ଯେ ସେ ତାଙ୍କଠାରୁ ସନ୍ନ୍ୟାସ ଗ୍ରହଣ କରିବାକୁ ଆଗ୍ରହୀ । ମାତ୍ର ଶ୍ରୀଯୁକ୍ତେଶ୍ୱରଜୀଙ୍କୁ ପ୍ରତିଶ୍ରୁତି ଦେଇଥିବାରୁ ତାଙ୍କର କାର୍ଯ୍ୟ ସମ୍ପାଦନ ପାଇଁ ସେ କରାର ଆଶ୍ରମରେ ହିଁ ଆଜୀବନ ରହିବେ । ଏହାପରେ ବହୁ ଦିନ ଧରି ଶଙ୍କରଙ୍କଠାରୁ ସାଧନା ଓ ଶାସ୍ତ୍ରଜ୍ଞାନ ଲାଭ କରିବାର ସୁଯୋଗ ବ୍ରହ୍ମଚାରୀ ରବିନାରାୟଣ ପାଇଥିଲେ ।

ଶଙ୍କର ଭାରତୀକୃଷ୍ଣ ଥିଲେ ବିଶ୍ୱ ବିଶ୍ରୁତ ଗଣିତଜ୍ଞ, ସାଧକ ଓ ମହାପୁରୁଷ । ବ୍ରହ୍ମଚାରୀ ରବିନାରାୟଣଙ୍କଠାରୁ ଯୋଗଦା ସମ୍ପର୍କରେ ଅବଗତ ହୋଇ ସେ ଆମେରିକାର ଯୋଗଦାଶ୍ରମରେ ମଧ୍ୟ ଉପସ୍ଥିତ ହୋଇଥିଲେ । ୧୯୫୮ ସାଲରେ ଯୋଗଦାର ସଂଘନେତ୍ରୀ ମାତାଜୀ ଦୟା ଭାରତର ବିଭିନ୍ନ କ୍ରିୟାଯୋଗ କେନ୍ଦ୍ର ପରିଭ୍ରମଣ ଉଦ୍ଦେଶ୍ୟରେ ଆସିବା ବେଳେ ବ୍ରହ୍ମଚାରୀ ରବିନାରାୟଣଙ୍କର କାର୍ଯ୍ୟ ଓ ସାଧନାରେ ଅଭିଭୂତ ହୋଇ ଯାଇଥିଲେ । ଶଙ୍କର ଭାରତୀକୃଷ୍ଣ ଥିଲେ ଲକ୍ଷ ଲକ୍ଷ ହିନ୍ଦୁଙ୍କର ଧାର୍ମିକ ପ୍ରତିନିଧି । ସେ ସଂଘନେତ୍ରୀ ଦୟାମାତାଙ୍କ ଆତିଥ୍ୟ ଗ୍ରହଣ କରି

ଆମେରିକାରେ ଦୁଇ ତିନି ମାସ ରହିଥିଲେ । ସଙ୍ଘନେତ୍ରୀ ଦୟାମାତା କଲିକତାରେ ଅବସ୍ଥାନ କାଳରେ ସମ୍ବାଦ ପତ୍ରରେ ପ୍ରଚାରିତ ହେଲା ଶଙ୍କରାଚାର୍ଯ୍ୟ ବମ୍ବେଠାରୁ ହାଓଡ଼ା ଆସୁଛନ୍ତି । ସ୍ୱାମିଜୀ ଓ ଅନ୍ୟାନ୍ୟ ସନ୍ନ୍ୟାସୀବର୍ଗ ତାହା ଶୁଣି ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନପାଇଁ ହାଓଡା ଷ୍ଟେସନ ଯାଇଥିଲେ ।

ଷ୍ଟେସନରେ ସେ ଓହ୍ଲାଇଲା ପରେ ସଙ୍ଘନେତ୍ରୀ ଦୟାମାତା ତାଙ୍କୁ ପ୍ରଣାମ କଲେ । ପରେ ସ୍ୱାମିଜୀଙ୍କୁ ଦେଖାଇ ସଙ୍ଘନେତ୍ରୀ ଭାରତୀକୃଷ୍ଣଙ୍କ ସହ ପରିଚୟ କରାଇ ଦେବାକୁ ଯାଇ ଇଂରାଜୀରେ କହିଲେ— ଏ ହେଉଛନ୍ତି ରବିନାରାୟଣ ବ୍ରହ୍ମଚାରୀ, ପୁରୀ ଆଶ୍ରମର ଅଧିକର୍ତ୍ତା, ଏ ହେଉଛନ୍ତି ପୁରୁଷୋତ୍ତମର ଗୋବର୍ଦ୍ଧନ ପୀଠ ଶଙ୍କରାଚାର୍ଯ୍ୟ । ଏହି କଥା ଶୁଣି ଭାରତୀକୃଷ୍ଣ ସଙ୍ଘନେତ୍ରୀଙ୍କୁ ଚାହିଁ ମୃଦୁ ହସି କହିଲେ— ସେ ବ୍ରହ୍ମଚାରୀ ନୁହନ୍ତି, ସେ ରବିନାରାୟଣ ଭଟ୍ଟାଚାର୍ଯ୍ୟ । ମୁଁ ତାଙ୍କୁ ଉତ୍ତମ ରୂପରେ ବହୁ-ପୂର୍ବରୁ ଜାଣେ । ସେ ମୋର ବେଦାନ୍ତଶାସ୍ତ୍ରର ଶିଷ୍ୟ । ବହୁ ପୂର୍ବରୁ ସେ ମୋଠାରୁ ସନ୍ନ୍ୟାସ ନେବାପାଇଁ ପ୍ରତୀକ୍ଷା କରି ରହିଛନ୍ତି । ୧୯୫୯ ମେ ମାସ ୨୭ ତାରିଖରେ ନିଜ ଜନ୍ମ ଦିବସରେ ପୁରୀର ଶ୍ରୀଯୁକ୍ତେଶ୍ୱର ସମାଧି ମନ୍ଦିରରେ ବୈଦିକ ବିଧି ଅନୁଯାୟୀ ସନ୍ନ୍ୟାସ ଗ୍ରହଣ କରିଥିଲେ ବ୍ରହ୍ମଚାରୀ ରବିନାରାୟଣ । ତାଙ୍କ ସହିତ ଆଉ ଜଣେ ପରମହଂସ ଯୋଗାନନ୍ଦଙ୍କ ଶିଷ୍ୟ ବଙ୍ଗଳାର ଲକ୍ଷ୍ମଣପୁର ଯୋଗଦାଶ୍ରମର ଶ୍ରୀ ଗିରିନ୍ ଦେ ମଧ୍ୟ ଶଙ୍କର ଭାରତୀକୃଷ୍ଣଙ୍କଠାରୁ ସନ୍ନ୍ୟାସ ଗ୍ରହଣ କରି-ଥିଲେ । ଗିରିନ୍ ଦେ ଙ୍କ ନାମ ଦିଆଯାଇଥିଲା ସ୍ୱାମୀ ବିଦ୍ୟାନନ୍ଦ ଗିରି ।

ସନ୍ନ୍ୟାସ ଦେବାପରେ ବ୍ରହ୍ମଚାରୀ ରବିନାରାୟଣଙ୍କ ନାମ ଶଙ୍କରାଚାର୍ଯ୍ୟ କରିଥିଲେ ସ୍ୱାମି ହରିହରାନନ୍ଦ ଗିରି । ଦୟାମାତା ମଧ୍ୟ ଆଶ୍ଚର୍ଯ୍ୟ

ହେଲେ ଯେ ଏହି ନାମଟି ପରମହଂସ ଯୋଗାନନ୍ଦ ମଧ୍ୟ ସ୍ୱାମିଜୀଙ୍କ ପାଇଁ ସ୍ଥିର କରି ରଖିଥିଲେ । ଶଙ୍କର ଭାରତୀକୃଷ୍ଣ ତାଙ୍କୁ ଗଭୀର ଆଶୀର୍ବାଦ ଦେଇ କହିଥିଲେ ତୁମର ହରଙ୍କ ପ୍ରତି ଯେପରି ଶ୍ରଦ୍ଧା ହରିଙ୍କ ପ୍ରତି ମଧ୍ୟ ସେହିପରି ଶ୍ରଦ୍ଧା । ତୁମେ ନଦିଆର ଦ୍ୱିତୀୟ ଗୌରାଙ୍ଗ ସ୍ୱାମୀ ହରିହରାନନ୍ଦ । ଗୌରାଙ୍ଗଙ୍କ ପରି ସୌମ୍ୟ ବପୁ , ଜ୍ଞାନ ଓ ପ୍ରେମର ସମ୍ଭାର ନେଇ ତୁମେ ଅବତାର ଗ୍ରହଣ କରିଛ । ସାରା ବିଶ୍ୱରେ ନୂତନ ସାଧନା ପ୍ରସାରିତ ହେଉ । ଯାବଜ୍ଜୀବନ ଶଙ୍କର ଭାରତୀକୃଷ୍ଣ ତାଙ୍କୁ ଦ୍ୱିତୀୟ ଗୌରାଙ୍ଗ ବୋଲି ଅଭିହିତ କରି ଆସୁଥିଲେ । ଭାରତୀତୀର୍ଥ ୧୯୫୮ ସାଲରେ ଆମେରିକା ଯାଇଥିଲେ । କୌଣସି ଶଙ୍କରାଚାର୍ଯ୍ୟ ଭାରତ ବାହାରକୁ ଯିବା ଏକ ପ୍ରଥମ ଘଟଣା । ସ୍ୱାମୀ ହରିହରାନନ୍ଦଙ୍କର ପ୍ରେରଣାରେ ହିଁ ସେ ଯୋଗଦାର ଆମନ୍ତ୍ରଣ ରକ୍ଷା କରିଥିଲେ । ଏହି ଭ୍ରମଣ କାଳରେ ସେ ଲସ୍ ଏଞ୍ଜେଲସ୍‌ର ସେଲଫ ରିଆଲାଇଜେସନ ଫେଲୋସିପର୍ ମଠରେ ଅବସ୍ଥାନ କରିଥିଲେ । ଏହାରି ଫଳରେ ଯୋଗଦାର କାର୍ଯ୍ୟପ୍ରସାର ଭାରତରେ ତ୍ୱରାନ୍ୱିତ ହୋଇଥିଲା । କେବଳ ସ୍ୱାମୀ ହରିହରାନନ୍ଦଙ୍କ ପ୍ରେରଣା ଫଳରେ ଯୋଗଦାର ପରମବନ୍ଧୁ ଭାବରେ ଶଙ୍କରାଚାର୍ଯ୍ୟ ଯୋଗଦା କାର୍ଯ୍ୟରେ ସହାୟତା କରିଯାଇଛନ୍ତି ।

ଯୋଗଦା ସତ୍‌ସଙ୍ଗ ଆଶ୍ରମ ଲକ୍ଷ୍ମଣପୁରର ସ୍ୱାମୀ ବିଦ୍ୟାନନ୍ଦ ଗିରି ଥିଲେ ପରମହଂସ ଯୋଗାନନ୍ଦଙ୍କର ଜଣେ ପରମ ଭକ୍ତ । ପରମହଂସ ଯୋଗାନନ୍ଦଙ୍କ କଥିତ 'ଯୋଗବାଣୀ'ର ବଙ୍ଗଳା ସଙ୍କଳନ ସେ କରିଥିଲେ । କଟକର ଆଶ୍ରମର ଜଣେ ପରମବନ୍ଧୁ ଭାବରେ ଲେଖକର ପରିଚୟ ତାଙ୍କ ସହ ୧୯୭୨ ମସିହାଠାରୁ ହୋଇ ଆସିଛି । ସ୍ୱାମିଜୀ ତାଙ୍କର ବଙ୍ଗଳାରେ ଯୋଗପଥ ନାମରେ ସାଧନା ସମ୍ପର୍କରେ ଉପଦେଶ ରଚନା କରିଛନ୍ତି ।

କଡାର ଆଶ୍ରମର ବାର୍ଷିକ ଉତ୍ସବରେ ମଧ୍ୟ ସେ ଯୋଗ ଦେଉଥିଲେ । ବଙ୍ଗଳାର ପୁରୁଲିଆ ଅଞ୍ଚଳରେ ସ୍ୱାମିଜୀଙ୍କ ନେତୃତ୍ୱରେ ଏକ ବଳିଷ୍ଠ କ୍ରିୟାଯୋଗ ପରିବାର ଗଠିତ ହୋଇଛି ।

ପରମହଂସ ଯୋଗାନନ୍ଦଙ୍କ ପରେ ଯୋଗଦାର ସଂଗଠନ ବହୁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ସ୍ୱାମୀ ସତ୍ୟାନନ୍ଦ ଗିରିଙ୍କ ଭଳି ଶ୍ରେଷ୍ଠ ସଂଗଠକ ଓ ଆଗ୍ରର୍ଯ୍ୟ ଯୋଗଦାରୁ ବିଦାୟ ନେଇଥିଲେ । କେବଳ ସେତିକି ନୁହେଁ, ସଂଗଠନର ଅଭାବ ଯୋଗୁ କ୍ରମଶଃ ସମସ୍ତ ଭାରତୀୟ ସନ୍ୟାସୀ ଭାରତରେ ବିଦେଶୀ ପ୍ରାଧ୍ୟାନ୍ୟ ଫଳରେ ବିଦାୟ ନେବା ଆରମ୍ଭ କରିଥିଲେ । କେତେକ ଆଶ୍ରମ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ଏହି ବିପର୍ଯ୍ୟୟକୁ ତ୍ୱରାନ୍ୱିତ କରିବାକୁ ଯେଉଁ ଧୂମକେତୁ ଭଳି ଜଣେ ବ୍ୟକ୍ତିଙ୍କର ଆବିର୍ଭାବ ହୋଇଥିଲା, ତାଙ୍କର ନାମ ହେଉଛି ବିନୟ ନାରାୟଣ ଦୂବେ । ତାଙ୍କ ସମ୍ପର୍କରେ ଯେଉଁ ଯଥାର୍ଥ ସମ୍ବାଦ ବହୁ ସନ୍ୟାସୀଙ୍କଠାରୁ ମିଳୁଛି ତାହା ଲେଖିବା ଦ୍ୱାରା ଲେଖକର ଲେଖନୀର ମର୍ଯ୍ୟାଦା ହାନି ହେବ । ଯୋଗଦା ଗ୍ରନ୍ଥ ଗୁଡ଼ିକର ପ୍ରକାଶିତ ଶତ ପ୍ରଶଂସାର ପ୍ରକୃତ ଯୋଗ୍ୟ ବ୍ୟକ୍ତି ସେ ନୁହନ୍ତି । ଯୋଗଦା ଆକାଶରେ ହଠାତ୍ ଉଦୟ ହୋଇ ସେ ହଂସ ସ୍ୱାମୀ ଶ୍ୟାମାନନ୍ଦରେ ପରିଚିତ ହେଲେ ଏବଂ ବିଚିତ୍ର ପରିସ୍ଥିତିରେ ଚିରଦିନ ପାଇଁ ସେ ବିଦାୟ ନେଲେ ୧୯୭୧ ମସିହାରେ । ସଙ୍ଘନେତ୍ରୀ ଦୟାମାତାଙ୍କୁ ସନ୍ତୁଷ୍ଟ କରି ୧୯୫୮ ସାଲରେ ଯୋଗଦାର ସାଧାରଣ ସମ୍ପାଦକ ବନିଗଲେ । ତାଙ୍କର ବ୍ୟବହାର ଓ କୂଟନୀତି ଫଳରେ ଭାରତୀୟ ସମସ୍ତ ସାଧକ କ୍ରମଶଃ ଯୋଗଦା ପରମ୍ପରାରୁ ବିଦାୟ ନେଇଗଲେ । ତାଙ୍କ ସହ ମଧ୍ୟ ଲେଖକର ପୁରୀରେ ସାକ୍ଷାତ ହୋଇଥିଲା । ସେହି ସ୍ୱାମୀ ହରିହରାନନ୍ଦଙ୍କୁ ଯୋଗଦା ପରମ୍ପରାରୁ ବିଚ୍ୟୁତ କରିବାକୁ ଗୁରୁତ୍ୱପୂର୍ଣ୍ଣ ଭୂମିକା

ଗ୍ରହଣ କରିଥିଲେ । ତାଙ୍କ ପରେ ମଧ୍ୟ ଯୋଗଦା ସ୍ୱାମିଜୀଙ୍କ ପ୍ରତି ସେହିପରି ମନୋଭାବ ପୋଷଣ କରିଥିଲା । କିଛି ସାଂଗଠନିକ କର୍ମ କରିଥିଲେ ମଧ୍ୟ ଯୋଗଦାରୁ ସାଧୁ ସମାଜକୁ ପୂର୍ଣ୍ଣତଃ ସେ ମୂଳୋତ୍ପାଟନ କରି ଦେଇ ଯାଇଥିଲେ ।

ସ୍ୱାମୀ ହରିହରାନନ୍ଦଙ୍କୁ କେନ୍ଦ୍ର କରି ଏକ କ୍ରାନ୍ତିକାରୀ କ୍ରିୟାଯୋଗ ଆନ୍ଦୋଳନ କ୍ରମଶଃ ମୁଣ୍ଡଟେକି ଉଠିଲା । ମାତ୍ର ସ୍ୱାମୀ ହରିହରାନନ୍ଦଙ୍କର ଏହି ସିଦ୍ଧି ଓ ସାଧନାର କଥା ଯୋଗଦାର ପତ୍ରିକା ପତ୍ରରେ ସମ୍ପୂର୍ଣ୍ଣ ସମସ୍ତ ରଖାଗଲା । ଯୋଗଦାର କାର୍ଯ୍ୟପନ୍ଥା ଓ କଡ଼ାର ଆଶ୍ରମ ପ୍ରତି ଯୋଗଦା କର୍ମକର୍ତ୍ତାଙ୍କ ମନୋବୃତ୍ତି ଯୋଗୁଁ ଶେଷରେ ସ୍ୱାମୀ ହରିହରାନନ୍ଦ ଯୋଗଦା କାର୍ଯ୍ୟରୁ ନିବୃତ୍ତ ରହି କଡ଼ାର ଆଶ୍ରମର ସାଧନା ପରମ୍ପରାକୁ ଉଜ୍ଜୀବିତ କରିବାରେ ତାଙ୍କର ସମସ୍ତ ସାଧନ ଶକ୍ତି ବିନିଯୋଗ କଲେ । ଫଳରେ ସମଗ୍ର ଓଡ଼ିଶା ତଥା ଭାରତରେ କଡ଼ାର ଆଶ୍ରମକୁ କେନ୍ଦ୍ର କରି ସାଧନାର ପରମ୍ପରା ପ୍ରସାର ଲାଭ କଲା ଏବଂ ନବ ଜାଗରଣ ସୃଷ୍ଟି ହେଲା ।

## ସ୍ୱାମୀ ହରିହରାନନ୍ଦଙ୍କ ପଦତଳେ:-

ସ୍ୱାମୀ ହରିହରାନନ୍ଦଙ୍କ ସହ ସାକ୍ଷାତ ଓ ସାଧନା ଗ୍ରହଣ ଲେଖକ ଜୀବନରେ ଏକ କ୍ରାନ୍ତିକାରୀ ଘଟଣା । ଏହା ୧୯୬୫ ମସିହାର କଥା । ମୁଁ ଥାଏ ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ଅଧ୍ୟାପକ । ସେହି କଲେଜର ଅଧ୍ୟାପକ ଚିତ୍ତରଞ୍ଜନ ଦାସ ଓ ଲେଖକ ଦୁହେଁ ଏକ ଅଜ୍ଞାତ ଆକର୍ଷଣରେ ଏହି ମହାନ୍ ଯୁଗ ପୁରୁଷଙ୍କ ପାଦତଳେ ଆଶ୍ରୋଇ ପଡ଼ିଥିଲୁ । ଚିତ୍ତ ବାବୁଙ୍କର ପିତାଥିଲେ ସ୍ୱାମିଜୀଙ୍କ ଶିଷ୍ୟ । ମାତ୍ର ମୁଁ ପୁରୀର ସମସ୍ତ

କୂଳରେ ଅବସ୍ଥିତ କଡ଼ାର ଆଶ୍ରମରେ ଚିତ୍ତବାବୁଙ୍କ ସହିତ ସ୍ୱାମିଜୀଙ୍କୁ ଦର୍ଶନ କରି ଅଭିଭୂତ ହୋଇଗଲି । ସ୍ୱାମିଜୀଙ୍କୁ ଦର୍ଶନ କରିବାର କିଛିଦିନ ପୂର୍ବରୁ ମୋର ଜୀବନରେ ଏକ ଅଲୌକି ଅନୁଭୂତି ହୋଇଥିଲା । ମୁଁ ମୋର ଜୀବନର ଗୁରୁ ଓ ପଥ ପ୍ରଦର୍ଶକଙ୍କୁ ଲାଭ କରିବା ପାଇଁ ଧ୍ୟାନ ଆରମ୍ଭ କରିଦେଇଥିଲି । ହଠାତ୍ ଦିନେ ପୁରୀ ମ୍ୟୁନିସିପାଲିଟି ମାର୍କେଟରେ ସଉଦାସାରି ବାହାରୁଛି, ମୋର ମନେ ହେଲା ଜ୍ୟୋତିର୍ମୟ ସତ୍ତା ମୋର ମଥା ଉପରେ ଯେପରି ଅବତରଣ କରୁଛି– ଦିବାଲୋକରେ ମୋର ସମସ୍ତ ପରିବେଶ ଯେପରି ଚନ୍ଦ୍ରାଲୋକରେ ପରିଣତ ହୋଇଗଲା। ମଥା ଉପରେ ଏହି ଶକ୍ତିର ଅବତରଣ ଭରରେ ମୁଁ ଚକିତ ହୋଇ ପାଖରେ ଏକ ଦୋକାନ ବେଞ୍ଚ ଉପରେ ବସିଗଲି । ସମ୍ମୋହିତ ଅବସ୍ଥାର ଅବସ୍ଥାନ ପରେ ରେକ୍‌ସାରେ ବସି ମୋର ବାସସ୍ଥଳୀକୁ ଆସି ଏହାର କାରଣ ଖୋଜି ପାଇଲି ନାହିଁ ।

ଏହି ଘଟଣାର କିଛିଦିନ ପରେ ସ୍ୱାମିଜୀଙ୍କ ସହିତ ମୋ'ର ସାକ୍ଷାତ୍ ହୋଇଥିଲା । ସେତେବେଳକୁ ଚିତ୍ତବାବୁ ଦୀକ୍ଷା ନେଇ ସାରିଥିଲେ । ତାଙ୍କ ମଧ୍ୟରେ ଦୀକ୍ଷା ଫଳରେ ଅଲୌକି ଧ୍ୱନି ଜ୍ୟୋତି ଓ ସ୍ପନ୍ଦନର ଜାଗରଣ ହୋଇଛି ବୋଲି ଶୁଣି ମୁଁ ଅନୁଭବ କଲି ଯେ ନିଶ୍ଚୟ ଜଣେ ସଦ୍‌ଗୁରୁଙ୍କର ସାକ୍ଷାତ ଲାଭ କରିଛନ୍ତି । ଆଶ୍ରମରେ ପହଞ୍ଚି ଜଟାଜୁଟ ପ୍ରାଚୀନ ଋଷିଙ୍କ ଏହି ମହାନ୍ ସନ୍ୟାସୀଙ୍କ ଦର୍ଶନ କରି ତାଙ୍କ ସହିତ କଥାବାର୍ତ୍ତା କରି ସନ୍ଧ୍ୟାବେଳେ ଧ୍ୟାନରେ ଯୋଗ ଦେବାକୁ ମୋର ପ୍ରବଳ ଇଚ୍ଛା ହେଲା । ସଞ୍ଜବେଳେ ଧ୍ୟାନବେଳେ କେବଳ ଚିତ୍ତବାବୁ, ଅନ୍ୟ କେତେଜଣ ଅଳ୍ପ ସଂଖ୍ୟକ ସାଧକ ଧ୍ୟାନ ମନ୍ଦିରରେ ଉପସ୍ଥିତ ଥିଲେ । ସ୍ୱାମିଜୀ ଧ୍ୟାନର ଦିଗ୍‌ଦର୍ଶନ ନେଉଥିଲେ । ମୁଁ ତାଙ୍କ ଖୁବ୍ ନିକଟରେ ରହି ବଡ଼ ଆଗ୍ରହରେ

ସାଧନା ପଦ୍ଧତି ସମ୍ପର୍କରେ ପର୍ଯ୍ୟବେକ୍ଷଣ କରୁଥିଲି । ଅନ୍ଧାର ହୋଇ ଯାଇ-ଥିଲା । ହଠାତ୍ ସ୍ୱାମିଜୀଙ୍କ ଶରୀର ମଧ୍ୟରେ ଏକ ନୀଳ ଜ୍ୟୋତି ବିନ୍ଦୁ ବିଚରଣ କରିବା ଲକ୍ଷ୍ୟକରି ମୁଁ କୌତୁହଳୀ ହୋଇ ପାଖକୁ ଗ୍ଲଲିଗଲି । ନିଶ୍ଚିତ ହେଲି ଯେ ଏହା ଜୁଳୁଜୁଳିଆ ଆଲୋକ ନୁହେଁ, ଅନ୍ୟ କିଛି ଆଲୋକ ନୁହେଁ– ସ୍ୱାମିଜୀଙ୍କ ଶରୀର ମଧ୍ୟରୁ ବିଚ୍ଛୁରିତ ଏକ ଅଲୌକିକ ଜ୍ୟୋତି । ସ୍ୱାମିଜୀ କରୁଣା କରି ମୋତେ ନିକଟକୁ ଡ଼ାକିଲେ ଟର୍ଚ୍ଚ ଆଲୋକରେ ତାଙ୍କର ଖେଚରୀ ଅବସ୍ଥା, ଜିହ୍ୱାର ଓଲଟ ଗତିରେ ତାଲୁକାଗହ୍ୱର ମଧ୍ୟରେ ପ୍ରବେଶର ପ୍ରକ୍ରିୟା ଦେଖାଇ ଦେଲେ ।

କିଛି ସମୟ ପରେ କହିଲେ ତାଙ୍କର ଦେହାତୀତ ସମାଧି ଅବସ୍ଥା ସ୍ପର୍ଶକରି ଦେଖିବାକୁ, ସାଧନା କଲେ କିପରି ଅବସ୍ଥା ଲାଭ ହୁଏ ତାହା ବୁଝିପାରିବ । ସ୍ପର୍ଶକରି ଦେଖିଲି ହୃଦଯନ୍ତ୍ର ନିସ୍ପନ୍ଦ । ନାଡ଼ୀ ମଧ୍ୟ ଚାଲୁ-ନାହିଁ । ବିଶ୍ୱରେ ଏପରି ଆଶ୍ଚର୍ଯ୍ୟ ଘଟଣା ଯେ ସମ୍ଭବ, ପୁଣି ମୋର ଜୀବନରେ ଏଭଳି କଳ୍ପନାତୀତ ଅବସ୍ଥା ପ୍ରତ୍ୟକ୍ଷ କରିବାର ସୁଯୋଗ ଯେ ଏପରି ଅକସ୍ମାତ୍ ଆସିବ, ତାହା ମୁଁ ଆଶାକରି ନଥିଲି । ଅନେକ ସମୟ ପରେ ସମାଧିରୁ ସ୍ୱାମିଜୀ ଜାଗ୍ରତ ହେଲେ । ଆମେ ତାଙ୍କ ପାଦରେ ପ୍ରଣାମ କରି ବିଦାୟ ନେଲୁ । ସେହି ମୁହୂର୍ତ୍ତରୁ ସ୍ୱାମିଜୀ ଯେପରି ମୋ'ର ହୃଦୟରେ ଅଧିଷ୍ଠିତ ହୋଇଗଲେ । ତାହାପରେ ତାଙ୍କୁ କୌଣସି କାଳରେ ବିସ୍ମରଣ ହେବା ଆଉ ସମ୍ଭବ ହେଲନାହିଁ । କେବଳ ପ୍ରାଚୀନ କାଳର ଋଷିଗଣ, ଶଙ୍କର, ବଶିଷ୍ଠ, ବାଲ୍ମୀକ, ରାମକୃଷ୍ଣ ପରମହଂସ ପ୍ରଭୃତି ମହା-ପୁରୁଷଗଣ ଏଭଳି ଅବସ୍ଥା ପାଇଛନ୍ତି ବୋଲି ମୁଁ ଶୁଣିଥିଲି । ମୋର ଅପାଂକ୍ତେୟ ଜୀବନରେ ଏପରି ଦୁର୍ଲଭ ଦିବ୍ୟ ଦର୍ଶନ ସମ୍ଭବ, ତାହା ମୋତେ ଅଭିଭୂତ କରିଦେଇଥିଲା । ତଥାପି ମୋର ଭୟଥିଲା, ଯେ ମୃତ୍ୟୁକୁ

ଅତିକ୍ରମ କରିଛନ୍ତି, ତାହାଙ୍କ ସଂସ୍ପର୍ଶରେ ଆସିଲେ ମୋ'ର ଜୀବନ ଧନ୍ୟ ହେବ ସତ୍ୟ, ମାତ୍ର ଯେଉଁ ସଂସାରରେ ମୁଁ ବାନ୍ଧି ହୋଇ ପଡ଼ିଛି, ତାହା ନିଶ୍ଚୟ ଧ୍ୱଂସ ହୋଇଯିବ । ଗୋଟିଏ ପାଖରେ ମାୟାମୋହ ଭ୍ରାନ୍ତିର ସଂସାର, ଅନ୍ୟପାଖରେ ମୁକ୍ତ, ବୁଦ୍ଧ ଓ ଶୁଦ୍ଧ ଏକ ମହାପୁରୁଷର ଦୁର୍ଲଂଘ୍ୟ ଆକର୍ଷଣ । ଉଭୟ ଆକର୍ଷଣ ମଧ୍ୟରେ ମୁଁ ଯେପରି ବିବ୍ରତ ହୋଇ ସ୍ୱାମିଜୀଙ୍କ ନିକଟବର୍ତ୍ତୀ ହେବାକୁ ମଧ୍ୟ ଭୟ କଲି । ଏହି ମହାନ ଶକ୍ତିଧର ପୁରୁଷ ପୃଥିବୀରେ ମୋତେ ସ୍ପର୍ଶକଲେ ମୁଁ ହୁଏତ ଭାରସାମ୍ୟ ହରାଇ ତାଙ୍କ ପଛରେ ଅନୁସରଣ କରିବି, ଏହି ଆଶଙ୍କାରେ ପ୍ରତି ରବିବା'ର ସତସଙ୍ଗ ସଭାରେ ଯୋଗ ଦେଲେ ମଧ୍ୟ ବହୁଦୂରରୁ ପ୍ରଣାମ କରି ପଳାଉଥିଲି । ସ୍ୱାମିଜୀଙ୍କ ଅନ୍ତର୍ଭେଦୀ ଦୃଷ୍ଟି ଯେପରି ବାରବାର ମୋତେ ଆକର୍ଷଣ କରୁଥିଲା ।

ମୁଁ ବୁଝିପାରିଥିଲି ଏହା ମୋ ଜୀବନରେ କାହିଁକି, ମଣିଷ ଜାତିର ଯେ କୌଣସି ମଣିଷ ଜୀବନର ଏକ ମହାନ୍ ଅଭିଜ୍ଞତା, ଏକ ଶ୍ରେଷ୍ଠ ଦର୍ଶନ । ପରମ ସୌଭାଗ୍ୟ ବଶତଃ ପୃଥିବୀର ଏକ ସର୍ବଶ୍ରେଷ୍ଠ ମଣିଷକୁ ମୁଁ ଦେଖି ପକାଇଛି । ମୋର ସମକାଳୀନ ନିର୍ବୋଧ ପୃଥିବୀ ଜାଣେ ନାହିଁ, ଏଭଳି ଏକ ପୁରୁଷୋତ୍ତମ ବୁଦ୍ଧପୁରୁଷ ଏହି ପୁରୁଷୋତ୍ତମ ଧାମରେ ସଗୁପ୍ତ ହୋଇ ରହିଛନ୍ତି । ମୋର ଜୀବନର ତଟିନୀ କ'ଣ ମହାସମୁଦ୍ରର ନିକଟରେ ପହଞ୍ଚି ଯାଇଛି ? ରବୀନ୍ଦ୍ରନାଥ ଲେଖିଥିଲେ କବିତା– ତରଣୀର ପାଲରେ ଲାଗିଛି ମନ୍ଦ ମଧୁର ହାଓ୍ୱା । ଏହା ମୋର ପ୍ରଥମ ଅନନ୍ତର ଯାତ୍ରା, ଯାହା ମୋର ସଂପୂର୍ଣ୍ଣ ଅଜ୍ଞାତ । କି ତୀବ୍ର ଆକର୍ଷଣ ସେହି ମହାତ୍ମାଙ୍କର, କେମିତି ବା କାହାକୁ ମୁ ବୁଝାଇବି ଯେ ଏହା ହେଉଛି ମାନବତାର ଶେଷ ସୀମା, ଏହାପରେ ମହାମାନବର ସାଗର ଲମ୍ବି ଯାଇଛି ଅନନ୍ତର ପଥରେ । ମୁଁ ବୁଝି ପାରୁ ନଥିଲି ଏମିତି ମହା ସୌଭାଗ୍ୟ କିପରି ଆସିଲା ମୋର ଦ୍ୱାରଦେଶକୁ ।

## – କ୍ରିୟାଯୋଗ ଓ ସ୍ୱାମୀ ହରିହରାନନ୍ଦ –

ଯେତେବେଳେ କହିବି ନାହିଁ, କହିବି ନାହିଁ ବୋଲି ଏତେଦିନ ଧରି ଗୋପନ କରି ରଖିଥିଲି ମୋର ଜୀବନର ମହାର୍ଘ ଅଭିଜ୍ଞତାର କଥା, ତାହା ଅନିର୍ବାର୍ଯ୍ୟ ବଶତଃ କହି ବସିଛି, ମୋ ମତରେ ଏହା ହେଉଛି ମଣିଷ ପାଇଁ ଏକ ଅବିଶ୍ୱାସ୍ୟ ସତ୍ୟ ଅନୁଭୂତି, ତେଣୁ ଏହି ଘଟଣା ସହିତ କିଛି ଯେ ସମ୍ପୃକ୍ତ ଥିବା ସାମାନ୍ୟ ଅତୀତର କଥା କହିଦେବା ଉଚିତ ମନେ କରୁଛି । ଏହା ମଣିଷ ପାଇଁ ଏକ ପରମ ସାକ୍ଷ୍ୟର କାହାଣୀ ହୋଇ-ପାରେ । ମୁଁ ସେତେବେଳେ ଆଠଗଡ଼ରେ ଗୋପବନ୍ଧୁ ବିଜ୍ଞାନ ମହା-ବିଦ୍ୟାଳୟର ଅୟମାରମ୍ଭ କାଳରେ ଅଧ୍ୟାପକ ଭାବରେ ଅବସ୍ଥାପିତ ହୋଇଥାଏଁ । ସମାଜ ସମ୍ପାଦକ ଡ: ରାଧାନାଥ ରଥ ଥିଲେ ତାହାର ସଭାପତି । ସେହି ସମୟରେ ବିବେକାନନ୍ଦ ଗ୍ରନ୍ଥାବଳୀ କଲେଜକୁ ଆସିଥାଏ । ସମୟ ଥାଏ ପ୍ରଚୁର । ମୁଁ ତାହା ସମ୍ପୂର୍ଣ୍ଣ ପଢ଼ିଦେଲି । ପଢ଼ିଲା ପରେ ଏକ ଆଶ୍ଚର୍ଯ୍ୟ ଜନକ ପରିବର୍ତ୍ତନ ମୁଁ ଅନୁଭବ କଲି ମୋ ମଧ୍ୟରେ । ମୋ ମଧ୍ୟରେ ଏହି ସତ୍ୟ ଗଭୀର ଭାବରେ ପ୍ରତିଷ୍ଠିତ ହେଲା –, ଯାହାକିଛି ଦେଖୁଛି ସମସ୍ତ ଭଗବଦ୍ ମୟ, ବ୍ରହ୍ମମୟ । ସେହି ବୋଧରେ ଦୈନଗତି ବିଧିର ରହିବା ମୋର ଏକ ସାଧାରଣ ଭାବ ହୋଇଗଲା । ଫଳରୁ ଭଳି ଧ୍ୟାନ କରିବା ଥିଲା ମୋର ଅତି ପିଲାକାଳରୁ ସ୍ୱାଭାବିକ ପ୍ରବୃତ୍ତି । ଧ୍ୟାନ କାହିଁକି କରୁଛି, ଏହାର ଫଳ ବା କଣ ତାହା ମଧ୍ୟ ଜାଣି ନଥିଲି । ମୋର ଯେତେଦୂର ସ୍ମରଣ ଆସୁଛି, ମଝିରେ ମଝିରେ ପିଲାକାଳରୁ ନିର୍ଜନ ସ୍ଥାନ ଦେଖିଲେ ବା ମନ୍ଦିର ମଧ୍ୟରେ ପ୍ରବେଶ କଲେ, ଧ୍ୟାନରେ ବସିଯିବାକୁ ଭଲ ଲାଗୁଥିଲା । ବିବେକାନନ୍ଦଙ୍କ ବାଣୀ ଓ ରଚନା ପଢ଼ିବା ପରେ ଆଠଗଡ଼ରେ ଗୋଟିଏ ରାତି ସମ୍ପୂର୍ଣ୍ଣ ଧ୍ୟାନରେ ବସିଲି । ପ୍ରାର୍ଥନା କଲି– ହେ ବିବେକାନନ୍ଦ ମୋର ଜୀବନର ସାଧନାଗୁରୁ କିଏ, ତାଙ୍କୁ ମୋତେ ଦେଖାଇ ଦିଅ, ମୁଁ ଆପଣଙ୍କୁ ଆଧ୍ୟାତ୍ମିକ ଗୁରୁଭାବରେ ଗ୍ରହଣ କରୁଛି ।

ଗତି ପାହିଗଲା. ସକାଳୁ ଅନ୍ତରରୁ ଗଭୀର ଅନୁଭବ କଲି ମୁଁ ନିଶ୍ଚିତ ଭାବରେ ମୋର ଗୁରୁଙ୍କୁ ଶୀଘ୍ର ପାଇବି । ତାପରେ ମୋର ପୁରୀକୁ ଟ୍ରାନ୍ସଫର ହେଲା ଓ ସ୍ୱାମୀ ହରିହରାନନ୍ଦଙ୍କ ସହ ମୋର ଦର୍ଶନ ପାଇବାର ସୌଭାଗ୍ୟ ମିଳିଗଲା ।

ପୁରୀରେ ଶିବାନନ୍ଦଙ୍କ ଗ୍ରନ୍ଥ ସବୁ ପଢିବା ପରେ ନିଜେ ନିଜେ ସାଧନାରେ ବସିଗଲି । ମାତ୍ର ପ୍ରାଣାୟାମ ଅନିୟମିତ କରିବା ଦ୍ୱାରା ମୋର ଦେହ ଅସୁସ୍ଥ ହୋଇ ପଡ଼ିଲା । ବହୁ କଷ୍ଟରେ ସୁସ୍ଥ ହେଲି । ପ୍ରାଣାୟାମ ଆଉ କଲି ନାହିଁ କେବଳ ଧ୍ୟାନ ହିଁ କରୁଥାଏ । ଋଷିକେଶରୁ ଚିଦାନନ୍ଦଜୀ ଓ ଡ଼ିଭାଇନ୍ ଲାଇଫ ସୋସାଇଟିର ସଙ୍ଗରେ ଯୋଗଦେଇ ଭାବିଲି, ହିମାଳୟରୁ ଆସିଥିବା ଏହି ସାଧକଙ୍କଠାରୁ ଦୀକ୍ଷାନେଲେ ମନ୍ଦ କ'ଣ । ଦୀକ୍ଷା ନେବା ପାଇଁ ଶିଷ୍ୟମାନଙ୍କ ଧାଡ଼ିରେ ବସିଗଲି ମଧ୍ୟ । ମାତ୍ର ସ୍ୱାମୀ ହରିହରାନନ୍ଦଙ୍କୁ ଭୁଲିବା ସହଜ ନଥିଲା । ଭାବିଲି ଚିଦାନନ୍ଦଜୀ ସମାଧିବାନ୍ ପୁରୁଷ ହୋଇ ପାରନ୍ତି, ନ ହୋଇ ପାରନ୍ତି ମଧ୍ୟ । ମାତ୍ର ସ୍ୱାମୀ ହରିହରାନନ୍ଦଙ୍କୁ ସମାଧିସ୍ଥ ହେବାର ଯେଉଁ ପ୍ରତ୍ୟକ୍ଷ ଅଭିଜ୍ଞତା ମୁଁ ପାଇଛି, କେଉଁଠି ମୋ ଜୀବନରେ ହୋଇ ନାହିଁ । ଏହି ପୁରୁଷୋତ୍ତମ ଧାମରେ ତାଙ୍କର ଦର୍ଶନ. ପ୍ରତ୍ୟକ୍ଷ ଶିକ୍ଷା ଓ ସ୍ପର୍ଶ ପାଇବି । ଚିଦାନନ୍ଦଜୀ ହିମାଳୟର ସ୍ୱଶରୀରରେ ଆସି ଯୋଗ ଶିକ୍ଷା ଦେବା ସମ୍ଭବ ମଧ୍ୟ ନୁହେଁ । ଦୀକ୍ଷାର ଧାଡ଼ିରୁ ଉଠି ଚାଲିଲି କରାର ଆଶ୍ରମକୁ । ଦେଖିଲି ସ୍ୱାମିଜୀଙ୍କ ଦ୍ୱାର ଖୋଲା । ସେ ଯେପରି ମୋତେ ହିଁ ଅପେକ୍ଷା କରି ବସିଛନ୍ତି ।

ଲୋଟି ପଡ଼ିଲି ସେହି ମହାତ୍ମାଙ୍କର ପଦତଳେ । କହିଲି ମୋର ଆଧ୍ୟାତ୍ମିକତାର ଅଭିଜ୍ଞତା ଲୋଡ଼ା, ତତ୍ତ୍ୱରେ ମୋର ପେଟ ପୂରୁନାହିଁ ସତ୍ୟାନୁଭିତି ମୋର ଏକାନ୍ତ ଆବଶ୍ୟକ । କରୁଣା କରି ମୋତେ ଶିଷ୍ୟ

ଭାବରେ ଗ୍ରହଣ କରନ୍ତୁ । ସ୍ୱାମିଜୀ କହିଲେ— ବାବା ଯେ ପର୍ଯ୍ୟନ୍ତ ତମର ତୀବ୍ର ଇଚ୍ଛା ହୋଇ ନଥିଲା ଆସୁ ନଥିଲ, ଏବେ ଯେବେ ଦୀକ୍ଷା ନେବ, ଦେବାକୁ ପ୍ରସ୍ତୁତ । ଚିତବାବୁଙ୍କୁ ଗୁରୁଦେବ ଡାକି ଦୀକ୍ଷା ଦେଇଥିଲେ, ତାଙ୍କର ପିତା ମଧ୍ୟ ସ୍ୱାମିଜୀଙ୍କଠାରୁ ଦୀକ୍ଷିତ ଥିଲେ । ମୋ ଲାଗି ସ୍ଥିର ହେଲା ଦୀକ୍ଷାର ଦିନ ୧୯୬୭ ମସିହା ଅଗ୍ନି ପୂର୍ଣ୍ଣିମା ତିଥି । ବୃଥାରେ ମୁଁ ଗୋଟିଏ ବର୍ଷ ଲୁଚକାଳି ଖେଳି କଟାଇ ଦେଲି । ଦୀକ୍ଷାର ପୂର୍ବଦିନ ପର୍ଯ୍ୟନ୍ତ ମୋର ଦେହ ଅସୁସ୍ଥ ରହିଲା । ଦୀକ୍ଷାର ପୂର୍ବଦିନ ଶରୀର ସୁସ୍ଥ ହୋଇଗଲା । ସେହିଦିନ ସ୍ୱାମିଜୀଙ୍କୁ ସାକ୍ଷାତ କଲି । ସ୍ୱାମିଜୀ କହିଲେ କ'ଣ ଆଉ କିଛି ଦିନ ଅପେକ୍ଷା କରିବା ? ମୁଁ ଆଉ ଅପେକ୍ଷା କରିବାକୁ ପ୍ରସ୍ତୁତ ନଥିଲି । କାରଣ ମୋର ଭୟଥିଲା ମୃତ୍ୟୁ ଯେକୌଣସିବେଳେ ଏକ ଅନିବାର୍ଯ୍ୟ ଘଟଣା, ଦୀକ୍ଷା ନେବା ପୂର୍ବରୁ ଯଦି କାଳେ ମୋର ମୃତ୍ୟୁ ହୁଏ ସେତେବେଳେ କିଏ ହେବ ମୋର ଦିଗ୍‌ଦର୍ଶକ ? ତେଣୁ ଏହି ମୃତ୍ୟୁଞ୍ଜୟୀ ମହାପୁରୁଷଙ୍କ ଠାରୁ ଦୀକ୍ଷା ନେଇ ଯିବା ହିଁ ଶ୍ରେୟସ୍କର ।

ଅଗ୍ନି ପୂର୍ଣ୍ଣିମାର ଶୁଭ ପ୍ରଭାତରେ ସ୍ନାନ ସାରି କଡ଼ାର ଆଶ୍ରମରେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ସମାଧି ମନ୍ଦିରରେ ପହଞ୍ଚି ଦେଖିଲି, ଗୁରୁଦେବ ଦୀକ୍ଷାର ଆୟୋଜନ କରି ଅପେକ୍ଷା କରିଛନ୍ତି । ପ୍ରଣାମ କରି ଦୀକ୍ଷା ଗ୍ରହଣ ପାଇଁ ବସିଗଲି । ଗୁରୁଦେବ ଦେହ ଶୋଧନ ପରେ ପୂଜାକରି ସ୍ପର୍ଶ କଲାମାତ୍ରେ ସମଗ୍ର ଶରୀର ଓ ସହସ୍ରାରରେ ଗଭୀର ସ୍ପନ୍ଦନରେ ବିଭୋର ହୋଇଗଲି । ସେତେବେଳେ ମୋର ଅଶ୍ରୁରୋଧ କରିବା ସମ୍ଭବ ନଥିଲା । ମନେ ମନେ ଭାବୁଥିଲି ବିବାହ ପୂର୍ବରୁ ଯଦି ଥରେ ସାକ୍ଷାତ ହୋଇଥାନ୍ତା, ତେବେ ସଂସାର ବନ୍ଧନରେ ମୁଁ ଆଉ ବାନ୍ଧି ହୋଇ ନଥାନ୍ତି । ତାହା

ଆଉ ସମ୍ଭବ ନୁହେଁ । ଦେଖିଲି ଗୁରୁଦେବଙ୍କ ଆଖି କରୁଣାରେ ଅଶ୍ରୁ ସିକ୍ତ । ଦୀକ୍ଷାପରେ ଅନୁଭବ କଲି ମୁଁ ସମ୍ପୂର୍ଣ୍ଣ ପବିତ୍ର ଓ ହାଲୁକା ହୋଇ ଯାଇଛି । ଆଶ୍ରମରେ ଗୁରୁଦେବଙ୍କ ସହିତ ମୋର ପ୍ରସାଦ ସେବନର ବ୍ୟବସ୍ଥା ହୋଇଥିଲା । ସେହିଠାରେ ମୋର ପରିଚୟ ହେଲା ବ୍ରହ୍ମଚାରୀ ପ୍ରଶାନ୍ତାନନ୍ଦ ଓ ବ୍ରହ୍ମଚାରୀ ଉକ୍ତି ପ୍ରକାଶଙ୍କ ସହିତ । ପ୍ରଥମଥର ପାଇଁ ବୁଝିଲି ଯେ ଯେଉଁ ସାଧନା ସହିତ ମୁଁ ସଯୁକ୍ତ ହୋଇଛି, ତାହା କ୍ରିୟାଯୋଗ ।

ପ୍ରାଣ ମୋର ଗଭୀର ପ୍ରଶାନ୍ତିରେ ଭରି ଯାଇଥିଲା । ଘରେ ଆସି ଗଭୀର ନିଦ୍ରାରେ ଶୋଇ ପଡ଼ିଲି । ଜୀବନରେ ଆଜିଯାଏ ବୋଧ-ହୁଏ ଏପରି ନିଦ୍ରା କେବେ ହୋଇନଥିଲା । ଉଠୁ ଉଠୁ ସନ୍ଧ୍ୟା ହୋଇ ଯାଇଥିଲା । ତର ତରରେ ପ୍ରସ୍ତୁତ ହୋଇ ସମୁଦ୍ର କୂଳେ କୂଳେ ପହଞ୍ଚିଲି କଡ଼ାର ଆଶ୍ରମର ଧ୍ୟାନ ମନ୍ଦିର ନିକଟରେ, ଉକ୍ତି ପ୍ରକାଶ ବ୍ରହ୍ମଚାରୀ ମୋତେ ସେଠାରେ ବସିବାକୁ କହିଲେ । ଗୁରୁଦେବ କିଛି ସମୟ ପରେ ଆସିଲେ । ତାଙ୍କର ପଦସ୍ପର୍ଶ କରି ମୁଁ ଧ୍ୟାନରେ ବସି-ଗଲି । ଗୁରୁଦେବ କ୍ରିୟାଯୋଗର ପ୍ରଥମ ଉପଦେଶ କହି କୂଟସ୍ଥରେ ଲକ୍ଷ୍ୟ ରଖିବାକୁ କହିଲେ । କୂଟସ୍ଥରେ ଲକ୍ଷ୍ୟ ରଖି ତାଙ୍କୁ ଚାହୁଁଥାଏ । ସେ କୂଟସ୍ଥ ସ୍ପର୍ଶ କରିବା ପରେ ଦେଖିଲି ଗୁରୁଦେବଙ୍କ ମୁହଁ ଏକ ଉଜ୍ଜ୍ୱଳ ଜ୍ୟୋତିର ବଳୟ ମଧ୍ୟରେ ଉଦଭାସିତ ହୋଇଯାଇଛି । ସେହି ଆଲୋକ ଯେପରି ମୋତେ ଆଚ୍ଛନ୍ନ କରିଦେଉଛି । ତାପରେ ମୁଁ ଆଖି ବୁଜି ସମ୍ପୂର୍ଣ୍ଣ ଧ୍ୟାନସ୍ଥ ହୋଇଗଲି. କ୍ରିୟାଯୋଗର ଅନ୍ୟ କୌଣସି ଉପଦେଶ ଶୁଣିବାଭଳି ଅବସ୍ଥା ମୋର ନଥିଲା ।

ଶ୍ୱାସ ପ୍ରଶ୍ୱାସ ଆଦୌ ଚାଲୁନଥିଲା, ସେଥିପାଇଁ ପ୍ରବୃତ୍ତି ମଧ୍ୟ ମୋର ନଥିଲା । ଶ୍ୱାସ ବାୟୁ ସ୍ଥିର ହୋଇଯାଇଥିଲା ବିନା ଅବ-

ବେଷ୍ଟନରେ । କ୍ରିୟାଯୋଗ ସାଧନାରେ ଯେଉଁ କେବଳ କୁମ୍ଭକର କଥା ବହୁପରେ ଶୁଣିଥିଲି ଏହା ଥିଲା ସେହି ଅବସ୍ଥା । ଅଥଚ ଶ୍ୱାସ ରୁଦ୍ଧ ହେବାର ଯନ୍ତ୍ରଣା ନଥିଲା । ତା'ପରେ ବୁଝିଲି ମୁଁ ଶରୀର ମଧ୍ୟରେ ନାହିଁ, ଶରୀର ମଧ୍ୟ ନାହିଁ । ଏହା ଏକ ଅବିଶ୍ୱାସ୍ୟ ବିଚିତ୍ର ସ୍ଥିତି । ଭସି ଆସୁଛି ସମୁଦ୍ରର ଗୁରୁ ଗର୍ଜନ, ଦୂର ଦେବାଳୟରୁ ଭସି ଆସୁଛି ଶଙ୍ଖଧ୍ୱନି, ସମ୍ପୂର୍ଣ୍ଣ ସଚେତନ ଓ ଜାଗ୍ରତ ଅବସ୍ଥାରେ ମଧ୍ୟ ଶୁଣି-ପାରୁଥିଲି ଶ୍ରୀଯୁକ୍ତେଶ୍ୱରଜୀଙ୍କ ମନ୍ଦିରରେ ପୂଜାର ଆରତି ଓ ଘଣ୍ଟାର ଶବ୍ଦ । ଦେହ ତ ନଥିଲା ତଥାପି ଭାବନା ଶକ୍ତି କିନ୍ତୁ ସ୍ତବ୍ଧ ହୋଇ ନ ଥିଲା । ବୁଝି ପାରୁଥିଲି, ଏହି ଅବସ୍ଥା ହେଲେ ଆଉ ମତ୍ୟୁ ଭୟ ନାହିଁ । ମୁଁ ତ ଦେହଠାରୁ ଭିନ୍ନ, ମୁଁ ଏକ ଅମର ଆତ୍ମା । ଦେହର ଖୋଳପା ଖସି ପଡ଼ିଲେ ମଧ୍ୟ, ଦେହ ଧ୍ୱଂସ ହୋଇଗଲେ ମଧ୍ୟ ମୋର ଅସ୍ତିତ୍ୱ ଅଛି । ଆହୁରି ଗଭୀର ନିମଗ୍ନ ଆନନ୍ଦମୟ ମଗ୍ନ ଅବସ୍ଥା ଧୀରେ ଧୀରେ ଯେପରି ମୋତେ ଆଚ୍ଛନ୍ନ କରୁଥିଲା । ଆଲୋକ ନାହିଁ, ଅନ୍ଧାର ନାହିଁ– ଏକ ଭୂମାର ସମୁଦ୍ର ମଧ୍ୟରେ ମୁଁ ଯେମିତି ଏକ ଆନନ୍ଦମୟ ଶୂନ୍ୟସ୍ଥିତିରେ ଭସିବୁଲୁଛି । କାଳର ଜ୍ଞାନ ନାହିଁ, ସ୍ଥାନର ଜ୍ଞାନ ନାହିଁ, କେବଳ ମୋ ବ୍ୟତୀତ ବିଶ୍ୱରେ ଆଉ କିଛି ସ୍ଥିତି ନାହିଁ ଏକ ପରିବ୍ୟାପ୍ତ ସତ୍ତା ମଧ୍ୟରେ ସମ୍ପୂର୍ଣ୍ଣ ଏକାକୀ ଯେପରି କେଉଁ ଅପରିଜ୍ଞାତ ଆକର୍ଷଣରେ କୁଆଡ଼େ ବୁଡ଼ି ବୁଡ଼ି ଯାଉଛି ।

ପ୍ରକୃତରେ ଏ ଅବସ୍ଥାର ବର୍ଣ୍ଣନା ପାଇଁ ଭାଷାର ଶକ୍ତି ଅତ୍ୟନ୍ତ ସିମୀତ । ଏହା ନିଜବୋଧ ରୂପ ଅବଙ୍ଗମାନସ ଗୋଚର ସ୍ଥିତି । ନିଜର ବ୍ୟକ୍ତି କୈନ୍ଦ୍ରିକ ପରିଚୟ ହରାଇ କେବଳ ସ୍ଥିର ମୁଁ ବୋଧରେ ସ୍ତବ୍ଧ ଆନନ୍ଦମୟ ସ୍ଥିତିରେ ମୋର କେତେ ସମୟ ବିତିଯାଇଛି ଜଣା

ନାହିଁ । ଭବାତୀତ ଏହି ଅବସ୍ଥାର ସ୍ଥିତି ମଧ୍ୟରେ ଗୋଟିଏ ମୁହୂର୍ତ୍ତରେ ଭାବିବାକୁ ଚେଷ୍ଟାକଲି– ମୁଁ କିଏ ? ସ୍ମରଣରେ ଆସିଲା ମୁଁ ପୃଥିବୀରେ ଥିଲି ବୋଧହୁଏ ମରିଯାଇଛି । ଅଥଚ ମୁଁ ଏକ ମୃତ୍ୟୁହୀନ ସତ୍ତା । ତଥାପି ଏହି କ୍ଷୁଦ୍ର ଅପାଙ୍‌କ୍ତେୟ ସତ୍ତାର ଅସ୍ତିତ୍ୱ ରଖି କଣ ଲାଭ । ବଂର ଯେଉଁ ମହାସତ୍ତାର ବ୍ୟାପ୍ତି ବୁଝିପାରୁଥିଲି, ତା ମଧ୍ୟରେ ବୁଡ଼ିଯାଇ ପାରିଲେ ପୂର୍ଣ୍ଣତା ଆସନ୍ତା । ସ୍ମରଣରେ ଆସିଲା ମୁଁ ଏକ ସତ୍ତା ଭାବରେ ବିବାହ କରିଥିଲି । ସ୍ତ୍ରୀ ପାଇଁ ପଦରେ ପାଇଁ ମନ କରୁଣାରେ ଭରିଗଲା । କଣ ମିଳିବ ସେହି ପୃଥିବୀରୁ ଯାହା ମୁଁ ଛାଡ଼ି ଆସିଛି । ଭଲ ଏହି ଦେହାତୀତ ଆନନ୍ଦମୟ ସ୍ଥିତି । ଚେଷ୍ଟାକଲି ଆହୁରି ବୁଡ଼ିଯିବା ପାଇଁ, ହଜାଇ ଦେବାପାଇଁ ଏହି କ୍ଷୁଦ୍ର ମୁଁକାରର ସତ୍ତାକୁ । ଆଉ ତାହା ସମ୍ଭବ ହେଲନାହିଁ । ପାର୍ଥିବ ସ୍ମୃତି ବୋଧହୁଏ ମୋର ଗଭୀରତର ମଧୁର ନିମଗ୍ନ ଅବସ୍ଥାର ପଥକୁ ରୁଦ୍ଧ କରି ଦେଇଥିଲା ।

ଧୀରେ ଧୀରେ ଗଭୀର ମଧୁରତାର ସ୍ତରରୁ ଯେପରି ତଳକୁ ମୁଁ ଖସି ଆସୁଥିଲି । ହଠାତ୍ ଦେଖିଲି ମୋର ସତ୍ତା ଦେହ ମଧ୍ୟରେ ଅଛି । ଅଥଚ କିଛି କରିବାର ଶକ୍ତି ମୋର ଲୋପ ହୋଇଯାଇଛି । ଏକ ବିପୁଳ ଶକ୍ତିର ପ୍ରେରଣାରେ କ୍ରମଶଃ ମୋର ଆପେ ଆପେ ସାଧନା ହେଉଛି । ଗୁରୁଦେବ ଧ୍ୟାନ ମନ୍ଦିରକୁ ଆସି ଯାଇଥିଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ସାଧନା ଓ ଧ୍ୟାନ ସ୍ୱତଃ ହେଉଥିଲା । ମୁଁ କେବଳ ଥିଲି ଦ୍ରଷ୍ଟା, ସାକ୍ଷୀସ୍ୱରୂପ । ସ୍ଥିରତାର ଆସ୍ୱାଦନ ମଧ୍ୟରେ କ୍ରମଶଃ ମୋର ପରିସ୍ଥିତି ସମ୍ପର୍କରେ ବହିର୍ଜଗତ ସମ୍ପର୍କରେ ଜାଗ୍ରତ ହୋଇଥିଲି । ମନେ ହେଲା ଖେଚରୀ ଅବସ୍ଥା, ଜିହ୍ୱାର କୁହର

ଗହ୍ୱରରୁ ତଳକୁ ଖସି ଆସିଥିଲା । ଜିହ୍ୱାର ମୂଳ ବଥା ବଥା ଲାଗୁଥିଲା । ଏକ ଗଭୀର ସଚେତନତା, ବ୍ୟାପକ ସଚେତନତା, ପ୍ରଜ୍ଞାବୋଧରେ ଅନୁଭବ କରିଥିଲି ଯେ ଏକ ବିରାଟ କର୍ମ ମୋ ପାଇଁ ଅପେକ୍ଷା କରିଛି । ପ୍ରାୟ ଏହି ଜୀବନରେ ଏକ ସାମଗ୍ରିକ ପୂର୍ବଦୃଷ୍ଟି ମୋ ଆଗରେ ପ୍ରତିଭାତ ହୋଇଗଲା । ସେଦିନ ଯାହା ଅନୁଭବ କରିଥିଲି, ଏବେ ଧୀରେ ଧୀରେ ତାର ରୂପ ସ୍ପଷ୍ଟତର ହେବାକୁ ଯାଉଛି ।

ପରେ ଚିତ୍ତବାବୁ ହିଁ ମୋତେ କହିଲେ ଯେ ସେ ଗୁରୁଦେବଙ୍କ ନିର୍ଦ୍ଦେଶରେ ମୋତେ କାନ୍ଧକୁ ଆଉଜାଇ ଦେଇଥିଲେ । ମୋର ଏ ଅବସ୍ଥା ଦେଖି ହତଚକିତ ହୋଇ ଯାଇଥିଲେ । ଏକ ନିର୍ବିକାର ଦେହାତୀତ ଭାବ ଅନେକ ଦିନ ଧରି ରହିବାପରେ ମୁଁ କ୍ରମଶଃ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲି । ସାଧନା ଓ କ୍ରିୟା ସମ୍ପର୍କରେ ଉଚ୍ଚତର ସମସ୍ତ ପ୍ରକ୍ରିୟା ଶିକ୍ଷାକରି ସାଧନାରେ ନିମଗ୍ନ ହୋଇଗଲି । ଆଜି ସାଧନାର ଅନେକ ପଥ ଅଗ୍ରସର ହେଲେ ମଧ୍ୟ ବୁଝୁଛି ଯେ ଏହା ମୋର ପ୍ରଥମ ଦିନର ସିଦ୍ଧି ତୁଳନାରେ ଅତ୍ୟନ୍ତ ତୁଚ୍ଛ । କ'ଣ ଉଚ୍ଚତମ କ୍ରିୟାଗୁଡ଼ିକ ପ୍ରଥମ ଦିନରେ ମୋର ସିଦ୍ଧ ହୋଇ ସାରିଥିଲା ? ସମ୍ଭବତଃ ଏହା ପୂର୍ବ ଜନ୍ମରେ ହିଁ ମୋର ଅଭ୍ୟାସ ଥିଲା । ଗୁରୁକୃପାରେ କ୍ରିୟାର ଶକ୍ତି କ୍ରମଶଃ ପ୍ରକାଶ ଲାଭ କରୁଛି, ବହୁଲୋକ ସଂସ୍ପର୍ଶରେ ଆସି ଗୁରୁଦେବଙ୍କ ଭଳି ମୋଠାରୁ ଦିବ୍ୟଧ୍ୱନି, ଜ୍ୟୋତି ଓ ସ୍ପନ୍ଦନର ସନ୍ଧାନ ଲାଭ କରୁଛନ୍ତି । ମାନସିକ ଶକ୍ତି ସ୍ଥୈର୍ଯ୍ୟ, ନୈତିକତା ଓ ବିଶ୍ୱର, ସଂସାର ମୁକ୍ତ ସ୍ଥିତି ପଥରେ ଧୀରେ ଧୀରେ ଗୁରୁ କୃପାରେ ଅଗ୍ରସର ହେବା ଅନୁଭବ କରୁଛି । ତଥାପି ଏବେ ମଧ୍ୟ ନିର୍ବିକଳ୍ପ ଅବସ୍ଥା ଲାଭର ପ୍ରତୀକ୍ଷାରେ ଅଛି । ପରମହଂସ

ଯୋଗାନନ୍ଦଙ୍କ ଯୋଗୀ ଜୀବନ ଗାଥାରେ ସମାଧିର ଯେଉଁ ମନୋଜ୍ଞ ବର୍ଣ୍ଣନା ଅଛି, ମୋର ଅନୁଭବ ତାର ସମଧର୍ମୀ ହେଲେହେଁ, ପରମହଂସ ଯୋଗାନନ୍ଦଙ୍କ ଗ୍ୱଦୁକରୀ ଭାଷାର ବର୍ଣ୍ଣାଢ୍ୟ ସ୍ୱପ୍ନିଳ ବର୍ଣ୍ଣନା ମଧ୍ୟରେ ତାହାକୁ ରୂପାନ୍ୱିତ କରିଛନ୍ତି ବୋଲି ମୁଁ ସମ୍ପୂର୍ଣ୍ଣ ନିଶ୍ଚିତ ।

## ସାଧନାର ପଥରେ କିଛି ସ୍ମୃତି:-

ଗୁରୁ କରୁଣା ବ୍ୟତିରେକ ସାଧକ ସାଧନା ପଥରେ ଅଗ୍ରସର ହେବା ସହଜ ନୁହେଁ । କାରଣ ଗୁରୁହିଁ ସାଧନା ଓ ସିଦ୍ଧିର ପ୍ରତୀକ ଏବଂ ସର୍ବଶ୍ରେଷ୍ଠ ପ୍ରେରଣା । ସୌଭାଗ୍ୟ ବଳରେ ମୋ ଜୀବନରେ ଏଭଳି ସଦ୍‌ଗୁରୁ ମିଳିଯାଇଛି । ଦୀକ୍ଷାପରେ କ୍ରମଶଃ ମୋର ସମସ୍ତ ଅସୁସ୍ଥତା ଦୂର ହୋଇଗଲା । ପ୍ରତିମୁହୂର୍ତ୍ତରେ ଅନୁଭବ କରୁଥିଲି ଗୁରୁଦେବଙ୍କ ସଚେତନ ଅସ୍ତିତ୍ୱ ଯେପରି ମୋତେ ସାଧନା ପଥରେ ନେଇ ଯାଉଛି । ବେଶି ଶିଷ୍ୟ ସେ କାଳରେ ନଥିଲେ- ଗୁରୁଦେବଙ୍କ ସବୁ କରୁଣା ଓ ସ୍ନେହର ସୌଭାଗ୍ୟ ଆମ ଉପରେ ଝରି ପଡୁଥିଲା । ବେଳେବେଳେ ଗୁରୁଦେବ ପୁରୀର ମୋ ଘରେ ଆସି ମଧ୍ୟ ସପରିବାର ମଧ୍ୟରେ ଧ୍ୟାନ କରି ଯାଉଥିଲେ । ଯିବାବେଳେ ତାଙ୍କ ସହ କରାର ଆଶ୍ରମରେ ଯାଇ ପୁଣି ଥରେ ଧ୍ୟାନ କରି ଆସୁଥିଲି । ସେହି ସୌଭାଗ୍ୟର ଦିନଗୁଡ଼ିକ ଆଉ ଫେରିବା ସମ୍ଭବ ନୁହେଁ । ଚିତ୍ତବାବୁ ଓ ମୁଁ ପ୍ରାୟ ଅନେକ ସମୟରେ ସାଙ୍ଗରେ ଧ୍ୟାନ କରୁଥିଲୁ । ଆମ ଜୀବନରେ ଯେଉଁ ଭୟଙ୍କର ବିଘ୍ନ ଆସିଥିଲା, ଗୁରୁକୃପାରେ ତାହା ଦୂର ହୋଇଥିଲା ।

ମୁଁ ସେତେବେଳେ ବୁଢ଼ୀମା ଠାକୁରାଣୀଙ୍କ ଲାଗି ତଳନୂଆସାହୀ ହେରମୋହିରୀ ଠାରେ ସପରିବାର ରହୁଥିଲି । ସକାଳେ ଶୀତ ଦିନ

ଧ୍ୟାନ କରି ସାରିବା ପରେ ହଠାତ୍ ମନଟା ସ୍ତବ୍ଧ ହୋଇଗଲା । ମନ ମଧ୍ୟରେ ଅଙ୍କିତ ହୋଇଗଲା ଗୁରୁଦେବଙ୍କର ଏକ ବାଣୀ– ବାବା, ଶୀଘ୍ର ପ୍ରସ୍ତୁତ ହୋଇଯାଅ । ମୁଁ ତୁମକୁ ଏକ ନୀଳରଙ୍ଗର କାର୍‌ରେ କଡାର ଆଶ୍ରମକୁ ନେଇଯିବି । ମୁଁ ଏହାର ଯୌକ୍ତିକତା କିଛି ଖୋଜି ପାଇଲି ନାହିଁ । ଥରେ ଥରେ ଅବଶ୍ୟ ଏମିତି ଘଟଣା ଘଟିଛି, ହଠାତ୍ ଗୁରୁଦେବଙ୍କ ସୌରଭ ଭସି ଆସିଛି– ଚିତ୍ତବାବୁ ଓ ମୁଁ ତାହା ଅନୁଭବ କରି କଡ଼ାର ଆଶ୍ରମକୁ ଯାଇ ଦେଖୁଁ ଯେ ଗୁରୁଦେବ କଲିକତାରୁ ଫେରି ଆସି ଆମ ଅପେକ୍ଷାରେ ଅଛନ୍ତି । ମାତ୍ର ଗୁରୁଦେବ ସାଧାରଣତଃ ଟ୍ରେନ୍‌ରେ ଆସନ୍ତି । କିନ୍ତୁ କାର୍‌ରେ ଆସି ମୋତେ ବା ନେବେ କାହିଁକି ?

ଏହା ମୋର ମାନସିକ ବିଭ୍ରାନ୍ତି ବୋଲି ବିଚାର କରି ମୁଁ ଆଉ ଗୁରୁତ୍ୱ ଦେଲି ନାହିଁ । ଧ୍ୟାନର ଆନନ୍ଦ ଓ ତୃପ୍ତିରେ ବରଂ ଟିକେ ଆଳସ୍ୟ ପରାୟଣ ହୋଇ ସ୍ନାନ କରିବି ବୋଲି ପ୍ରସ୍ତୁତ ହୋଇଛି– ପ୍ରାୟ ଘଣ୍ଟାଏ ବିତିଗଲାଣି, ହଠାତ୍ ଶୁଭିଲା କାରର ହର୍ଣ୍ଣ ଶବ୍ଦ । ତା'ପରେ ଶୁଣିବାକୁ ପାଇଲି ଦ୍ୱାର ଖଡ଼ ଖଡ ଶବ୍ଦ । ସ୍ତ୍ରୀ ବିନୋଦିନୀ ଦ୍ୱାରଖୋଲି ଦେଖିଲା ଦ୍ୱାରଦେଶରେ ଗୁରୁଦେବ ଉଭା ହୋଇଛନ୍ତି । ମୁଁ ଯଥାଶୀଘ୍ର ସ୍ନାନ ସାରି ପ୍ରସ୍ତୁତ ହୋଇ ତାଙ୍କ ପାଦତଳେ ଲୋଟି ପଡ଼ିଲି । ବାହାରେ ନୀଳ ରଙ୍ଗର କାରରେ ଡ଼କ୍ଟର ଶିଶିର ବୋଷ ଓ ଗୁରୁଦେବଙ୍କ ଏକ ଶିଷ୍ୟା ବସିଥିଲେ । ମୁ ମୋର ପୁଅ ବିବେକାନନ୍ଦ, ଭଉଣୀ ତିଲୋତ୍ତମା, ମନୋରମା ଦୁଇଟି ଝିଅ ମାନସୀ, ସରସୀ, ସମସ୍ତେ ପ୍ରସ୍ତୁତ ହୋଇ ସାଙ୍ଗରେ ଗଲୁ ଆଶ୍ରମକୁ । ଗୁରୁଦେବଙ୍କୁ କହି ପାରୁ ନଥିଲି ଯେ ତାଙ୍କର ନିର୍ଦ୍ଦେଶ ମୁଁ ପାଇଥିଲି । ଅଥଚ ବିଶ୍ୱାସ କରି ପାରୁ ନଥିଲି । ସେଦିନ ଯୋଗଦା ସତସଙ୍ଗର ସଙ୍ଘନେତ୍ରୀ ଦୟାମାତା ଆସୁଥିଲେ କଡ଼ାର ଆଶ୍ରମକୁ ।

ତାଙ୍କୁ ସମର୍ଦ୍ଧନା ପାଇଁ ଏହି ଆୟୋଜନର ଆବଶ୍ୟକତା ଥିଲା । ଏହାକୁ ଆଧୁନିକ ବିଜ୍ଞାନ ଟେଲିପ୍ୟାଥି ବୋଲି କହେ । ମାତ୍ର ଏହାଶୁଣି ମୋ ଜୀବନରେ ଏପରି ପ୍ରଣାମିତ ହୋଇଯିବ ତାହା ମୋ ପକ୍ଷରେ ଆଶ୍ଚର୍ଯ୍ୟ ଜନକ ଘଟଣା । ଏପରି ଘଟଣା ହୁଏତ କେତେଥର ହୋଇଛି, ମାତ୍ର ଏହାହିଁ ସବୁଠାରୁ ସ୍ମରଣୀୟ ଘଟଣା ।

କଡାର ଆଶ୍ରମରେ ବହୁବାର ଗୁରୁଦେବଙ୍କର ସମାଧି ଅବସ୍ଥା ପ୍ରତ୍ୟକ୍ଷ କରିବାର ସୁଯୋଗ ପାଇଛି । ଗୁରୁଦେବ ମଝିରେ ମଝିରେ ଧ୍ୟାନ କାଳରେ ସମାଧିସ୍ଥ ହେଲେ ତାଙ୍କୁ ସ୍ପର୍ଶ କରି ଧ୍ୟାନ କରିବାର ସୁଯୋଗ କେବେ ମୁଁ ଛାଡେ ନାହିଁ । ତେବେ ବେଶି ସମୟ ତାଙ୍କୁ ସମାଧିସ୍ଥ ହେବାପାଇଁ ସୁଯୋଗ ଦେବାକୁ ମୋର ଭାରି ଭୟ । କାରଣ ପରମହଂସ ଯୋଗାନନ୍ଦ ତ ଏହିପରି ସମାଧିସ୍ଥ ହୋଇ ଆଉ ଫେରି ଆସି ନଥିଲେ । ତେଣୁ ଟିକିଏ ସମାଧିସ୍ଥ ହେଲେ ଦେହ ଓ ହାତ ଦୋହଲାଇ ତାଙ୍କୁ ଶୀଘ୍ର ଦେହ ବୋଧକୁ ମୁଁ ଏବଂ ବ୍ରହ୍ମଚାରୀ ଉକ୍ତିପ୍ରକାଶ ଫେରାଇଆଣୁ । ଗୁରୁଦେବ ଶିଷ୍ୟର ମଙ୍ଗଳ ପାଇଁ ସାଧନ ଶକ୍ତି ସଞ୍ଚର ପାଇଁ ଏପରି ଅବସ୍ଥା ଲାଭ କରିଥାନ୍ତି । ଦୁଇଟି ଘଟଣା ମୋର ଜଣାଅଛି, ଯେତେବେଳେ ଗୁରୁଦେବ ସୂକ୍ଷ୍ମ ଶରୀରରେ ସମାଧିସ୍ଥ ହୋଇ ଶିଷ୍ୟଙ୍କୁ ସାହାଯ୍ୟ କରିଥିଲେ । ଏଭଳି ଘଟଣା ଗୁଡ଼ିକ ବିଶଦ ବର୍ଣ୍ଣନା କଲେ ଗ୍ରନ୍ଥର କଲେବର ସ୍ଫୀତ ହୋଇଯିବ । ଏଭଳି ଅଭିଜ୍ଞତା କେବଳ ମୋର ନୁହେଁ, ବହୁ ଶିଷ୍ୟଙ୍କର ହୋଇଛି ।

କଡ଼ାର ଆଶ୍ରମରେ ଧ୍ୟାନ ସମୟରେ ଗୁରୁଦେବ ବେଳେବେଳେ କହନ୍ତି, ଆଜି ଧ୍ୟାନରେ ତୁମେ ଗୋଟିଏ ଜନ୍ମର ସାଧନା ଅତିକ୍ରମ କଲ । କଡାର ଆଶ୍ରମ ଏକ ଯୋଗ ବିଶ୍ୱବିଦ୍ୟାଳୟ ଭା ୨୬ ୮ ଧୀରେ

ଧୀରେ ବିଦେଶର ସାଧକ ଗଣଙ୍କୁ ଆକର୍ଷଣ କରୁଥିଲା । ଗୁରୁଦେବଙ୍କ ଆଶ୍ରମ କାଳରେ ଧ୍ୟାନ ମନ୍ଦିର ପରିପୂର୍ଣ୍ଣ ହୋଇଯାଉଥିଲା । ଗୁରୁଦେବ ଆମକୁ ପ୍ରେରଣା ଦେବାପାଇଁ କହିଲା ବେଳେ ଦିନେ ମୁଁ ତାଙ୍କୁ କହିଲି ବାବା ଆପଣ ଏପରି କହି ଲାଭ କଣ. ମୁଁ ଯଦି ଧ୍ୟାନରେ ଏତେ ଅଗ୍ରଗତି କରୁଛି – ତାହା ଜାଣି ପାରୁନାହିଁ କିପରି ? ଗୁରୁଦେବ କହିଲେ ତୁମେ ଯେପରି ଦର୍ପଣରେ ନିଜ ମୁହଁ ଦେଖିପାର ତୁମର ସାଧନାକୁ ମୋର ଦେହ ମଧ୍ୟରେ ଦେଖ ।

ଦ୍ୱାର ବନ୍ଦକରି ଏକା ତାଙ୍କ ସାଥିରେ ଧ୍ୟାନରେ ବସିଲି । ଗୁରୁଦେବ କହିଲେ ତୁମେ କ୍ରିୟା କର ଓ କ୍ରିୟାର ପ୍ରତିଫଳନ ମୋ ମଧ୍ୟରେ ଦେଖିପାରିବ । ମୁଁ ମୋର ଛଅଟି ଚକ୍ରରେ ଓ ଶରୀରରେ ଯେଉଁଠି ଚେତନା ରଖିଲି, ଦେଖିଲି ଯେ ଗୁରୁଦେବଙ୍କ ଶରୀରରେ ଜ୍ୟୋତିର ସ୍ଫୁରଣ ପ୍ରତିଫଳିତ ହେଉଛି । ଆଶ୍ଚର୍ଯ୍ୟର କଥା, ମୁଁ ଧ୍ୟାନ କରୁଛି ମୋର ଶରୀରରେ, ଗୁରୁଦେବଙ୍କ ଅଙ୍ଗରେ ମୋର ଧ୍ୟାନ କରୁଥିବା ନିଜ ଅଙ୍ଗର ଚେତନା ଅନୁସାରେ ନୀଳ ଜ୍ୟୋତିର ସ୍ଫୁରଣ ହେଉଛି । ଏହା ଅର୍ଜୁନର ବିଶ୍ୱରୂପ ଦର୍ଶନ ଭଳି ଏକ ଅଲୌକିକ ଘଟଣା । ମୋର ମୂଳାଧାରରେ ଲକ୍ଷ୍ୟ କଲି, ଦେଖିଲି ଗୁରୁଦେବଙ୍କ ଶରୀରରେ ଏକ ଜ୍ୟୋତିର ପଦ୍ମପାଖୁଡ଼ା ଯେପରି ଘୁରିଯାଉଛି, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ, ଆଜ୍ଞା ଓ ସହସ୍ରାରରେ ଏହିପରି ଜ୍ୟୋତିର ସ୍ଫୁରଣ ଦେଖିଲି । ମୋର ଦେହର ଯେଉଁଠି ଚେତନା ସ୍ଥାପିତ କଲି, ସେଠାରେ ମଧ୍ୟ ସେହିପରି ଦିବ୍ୟ ଜ୍ୟୋତି ସ୍ଫୁରିତ ହୋଇଗଲା । ମୁଁ ତାଙ୍କ ପାଦରେ ପ୍ରଣାମ କରି କହିଲି, ଆପଣ ଯାହା କହୁଛନ୍ତି– ତାହା ସତ୍ୟ ବୋଲି ମୁଁ ଗ୍ରହଣ କରୁଛି । ଆପଣ ବ୍ରହ୍ମବିଦ୍ ଆପଣ ପ୍ରଜ୍ଞା ଦୃଷ୍ଟିରେ ଆମର ସାଧନା ଦେଖି ପାରୁଛନ୍ତି ।

ଗୁରୁଦେବଙ୍କ ଶରୀରରେ ଜ୍ୟୋତିର ସ୍ଫୁରଣ ମୁଁ ଅନେକ ଥର ଦେଖିବାର ସୁଯୋଗ ପାଇଛି । ଥରେ ବାଲେଶ୍ୱରରେ ଜିଲ୍ଲା ଜଜ୍ ଶ୍ରୀ ଜଗନ୍ନାଥ ପଟ୍ଟନାୟକ ଓ ରେଜିଷ୍ଟ୍ରାର ଶିବରାମ ରଥ ଓ ମୁଁ ଧ୍ୟାନବେଳେ ତିନିଜଣ ଏହି ଜ୍ୟୋତିର ସ୍ଫୁରଣ ତଥା ସମାଧି ଅବସ୍ଥା ଜିଲ୍ଲା ଜଜଙ୍କ କ୍ୱାଟର୍ସରେ ଦେଖିଥିଲୁ । ଡ଼ାକ୍ତର ଘୋଷ, ଡାକ୍ତର ଗୁହ ଚିତ୍ତବାବୁ, ପ୍ରେମାନନ୍ଦ ବାବା ଓ ଅନ୍ୟମାନେ ଗୁରୁଦେବଙ୍କ ସମାଧି ଅବସ୍ଥା ଦେଖିଥିବା ମୁଁ ଜାଣେ । ତେବେ, ଜ୍ୟୋତି ସ୍ଫୁରଣ ଅନୁଭବ ବେଶି ଲୋକ ଦେଖି ନାହାନ୍ତି । ଗୁରୁଦେବ କହନ୍ତି ଏହି ଅବସ୍ଥା ସଂସାରୀ ଲୋକଙ୍କୁ ଦେଖାଇଲେ, ସେମାନେ ଏହି ଦିବ୍ୟ ଜ୍ୟୋତିକୁ କହିବେ ଇନ୍ଦ୍ରଜାଲ । ତେଣୁ ଏହି କୁଣ୍ଡଳିନୀ ଶକ୍ତିର ଦିବ୍ୟ ପ୍ରକାଶକୁ ସେ କେବଳ ତାଙ୍କର ପ୍ରିୟତମ ଉଚ୍ଚାଙ୍ଗ ଶିଷ୍ୟମାନଙ୍କୁ କ୍ୱଚିତ୍ ସାଧନାର ଉତ୍‌ଥାନ ପାଇଁ ଦେଖାଇଥାନ୍ତି ।

ଜୀବନରେ ଏପରି ଅନେକ ଛୋଟ ଛୋଟ ବିଚିତ୍ର ଘଟଣା ଘଟିଛି ତା ମଧ୍ୟରେ ଗୁରୁଦେବଙ୍କ କରୁଣା ଓ ଅଲୌକି ଶକ୍ତି ମୁଁ ପ୍ରାଣେ ପ୍ରାଣେ ଅନୁଭବ କରିଛି । ଏହା ମୋ ଜୀବନର ଅତ୍ୟନ୍ତ ବ୍ୟକ୍ତିଗତ କଥା । ତାହା ବର୍ତ୍ତମାନ ଉଲ୍ଲେଖ କରିବା ଦ୍ୱାରା ଗ୍ରନ୍ଥରେ କଲେବର ବଢ଼ି-ଯିବ । ତେଣୁ ପରବର୍ତ୍ତୀ କାଳରେ ତାହା ଲେଖିବାର ଇଚ୍ଛା ରଖି ବର୍ତ୍ତମାନ ସଂଯତ ରହୁଛି । ମୋର ବାରିପଦା ଟ୍ରାନ୍ସଫର କାଳରେ ସେଠାରେ ହିଁ ଗୁରୁଦେବ ତାଙ୍କ ଜୀବନର ପ୍ରଥମ ଓଡ଼ିଆ ଭାଷଣ ଦେବା ମୋର ସ୍ମରଣ ଅଛି । ଡାକ୍ତର ଘୋଷ ଓ ଗୁରୁଦେବ ସେଠାରେ ବହୁବାର କ୍ରିୟାଯୋଗ ସମ୍ପର୍କରେ ଭାଷଣ ଦେଇଥିଲେ । ସେଠାରେ ହିଁ ଓଡ଼ିଶାର କ୍ରିୟାଯୋଗ ପ୍ରଚାରର ଭିତ୍ତି ପଡ଼ିଥିଲା । ସେହି କାଳରେ

ଗୁରୁଦେବଙ୍କ ବାଣୀ ଓ ରଚନା ଗୁଡ଼ିକ ସଂଗ୍ରହ କରି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଁ ମୁଁ ଚେଷ୍ଟା କଲି । ଫଳରେ ସମଗ୍ର ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକେ କ୍ରିୟାଯୋଗ ଗ୍ରହଣ ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ସେହି କାଳରେ ବାଲେଶ୍ୱରରେ ଭଦ୍ରକରେ ଗୁରୁ-ଦେବଙ୍କ ସହ ବୁଲି ତାଙ୍କର ମହାନ୍ କାର୍ଯ୍ୟରେ ଗୁଣ୍ଡୁଚି ଭଳି ମୁଁ ସାଧନା ପ୍ରଚାରରେ ସହଯୋଗ କରୁଥିଲି । ଏହା ୧୯୭୦ ମସିହାର କଥା । ସେହି କାଳରେ ଗୁରୁଦେବଙ୍କ ଗୋଟିଏ କଥା ମୋର ସ୍ମରଣ ଅଛି । ଗୁରୁଦେବ କହିଥିଲେ ଯେ ଯେଉଁ ବିରଟ କ୍ରିୟାବାନ ସଂସାର ଛାଡ଼ିଯିବେ, ସେମାନଙ୍କୁ ଧ୍ୟାନ ଓ ସାଧନାରେ ଆଜୀବନ ମୋତେ ସାହାଯ୍ୟ କରିବାକୁ ହେବ । ସେହି ମହାନ୍ ବ୍ରହ୍ମବିଦ୍ ମହାପୁରୁଷଙ୍କର ନିର୍ଦ୍ଦେଶ ମୁଁ ସେହି କାଳରୁ କ୍ଷଣେ ହେଲେ ଭୁଲିପାରିନାହିଁ ।

ଗୁରୁକୃପାରୁ ପୁନଶ୍ଚ ମୋର ପୁରୁଷୋତ୍ତମ କ୍ଷେତ୍ରକୁ ବଦଳି ହେଲା । ପ୍ରାୟ ପ୍ରତି ରବିବାର ମୁଁ ସପରିବାର ସକାଳୁ ସନ୍ଧ୍ୟାଯାଏ କଡ଼ାର ଆଶ୍ରମରେ କଟାଇ ଆସୁଥିଲି । ବାରିପଦା ରହଣି କାଳରେ ମଧ୍ୟ ଗ୍ରୀଷ୍ମ, ପୂଜା ଓ ଶୀତ ଦିନ ଛୁଟି ମାନଙ୍କରେ ପୁରୀର ଆଶ୍ରମରେ ରହି ଗୁରୁଦେବଙ୍କର ସାଧନାର କଥା ଓ ବାଣୀ ସଂଗ୍ରହ କରୁଥିଲି ଓ ଧ୍ୟାନ ସାଧନାରେ ସମୟ କଟାଉଥିଲି । ଜୀବନ ଥିଲା ଆନନ୍ଦମୟ । ତାଙ୍କର କରୁଣାର ଛତ୍ର ଛାୟାତଳେ ଜନ୍ମ ଜନ୍ମ ବିତିଗଲେ ମଧ୍ୟ ସୌଭାଗ୍ୟ ବୋଲି ମୁଁ ମନେ କରିବି, ସେ ଯଦି ଏହିପରି ମୋ ସାଧକଜୀବନର ସାରଥି ହୁଅନ୍ତି । ତାଙ୍କର ବରୁଣାବନ ପ୍ରେମମୟ ମୂର୍ତ୍ତି ହିଁ ମୋ ଜୀବନର ଏକମାତ୍ର ସାନ୍ତ୍ୱନା ।

ମୁଁ ସେତେବେଳେ ପୁରୀ ସାନ୍ଧ୍ୟ ମହାବିଦ୍ୟାଳୟରେ ଅବସ୍ଥାପିତ ହୋଇଥାଏଁ । ସେହି ସମୟରେ ଗ୍ରୀଷ୍ମ ଛୁଟିରେ ଗୁରୁଦେବଙ୍କ ସହିତ

ବ୍ରହ୍ମପୁର ସହର, ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମର କେତେକ ସ୍ଥାନରେ କ୍ରିୟାଯୋଗ ପ୍ରସାର ପାଇଁ ଯାଇଥିଲି ଓ ଧ୍ୟାନ ଶିକ୍ଷା ଦେବାରେ ସହାୟତା କରୁଥିଲି । ସେଠାରେ ଏକ ଶକ୍ତିଶାଳୀ କ୍ରିୟାବାନ ଗୋଷ୍ଠୀର ସୃଷ୍ଟି ହୋଇଥିଲା । ଚିପୁରୁପଲ୍ଲି ଓ ବ୍ରହ୍ମପୁରରେ ଗୁରୁଦେବ ଅନେକଥର ପ୍ରବଚନ ଦେଇଥିଲେ । ଥରେ ଗୁରୁଦେବଙ୍କ ସହ ଆଶ୍ରମରେ ରହିବା ବେଳେ ଦୁଇଜଣ ମାର୍କିନ ବୈଜ୍ଞାନିକ ଡ଼ଃ ଏଲମାନ ଓ ଡ଼ଃ ଆଲିସ ଗ୍ରୀନ ମେନଙ୍ଗର ଫାଉଣ୍ଡେସନ୍ ତରଫରୁ ବୈଜ୍ଞାନିକ ଯନ୍ତ୍ରପାତି ଅବଲମ୍ବନରେ ଉଚ୍ଚତର ଯୋଗ ସମ୍ପର୍କରେ ଗବେଷଣା କରିବାକୁ ଆସି କଡ଼ାର ଆଶ୍ରମରେ ପହଞ୍ଚିଲେ । ଗୁରୁଦେବ ସେ ସମୟରେ କଟକ ବାହାରିଥିଲେ । ସେ ମୋ ଆଡ଼କୁ ଦେଖାଇ ମୋର ଧ୍ୟାନର ପରୀକ୍ଷା ଯନ୍ତ୍ର ସାହାଯ୍ୟରେ କରିବାକୁ କହିଲେ । ପ୍ରାୟ ଏହା ୧୯୭୪ ମସିହାର ଡ଼ିସେମ୍ବର ମାସର ଘଟଣା । ସେ ସମୟରେ ଯୋଗଦା ସହ କଡ଼ାର ଆଶ୍ରମର ବିଭେଦ ସୃଷ୍ଟି ହୋଇ ସାରିଥିଲା । କେହି ଜଣେ ଗୁରୁଦେବଙ୍କୁ ଜୀବନରେ ମାରିଦେବାପାଇଁ ଓ କଡ଼ାର ଆଶ୍ରମ ଯୋଗଦାକୁ ଦେଇ ଦେବାପାଇଁ ଧମକ ପୂର୍ଣ୍ଣ ପତ୍ର ଦେଇଥିଲା । ତାହା ଦେଖି ମୋର ମନରେ ଅଶାନ୍ତି ସୃଷ୍ଟି ହେଲା । ଏହା ସେଦିନ ଠିକ ଧ୍ୟାନପୂର୍ବରୁ ମୁଁ ପତ୍ରଟି ଦେଖିଥିଲି । ବୈଜ୍ଞାନିକ ଦମ୍ପତି ଥିଲେ ବିଶ୍ୱ ବିଶ୍ରୁତ ମନୋବୈଜ୍ଞାନିକ । ସେମାନେ ମୋର ଧ୍ୟାନକୁ ଫିଲମ ପାଇଁ ଗ୍ରହଣ କରି ନେଇଥିଲେ ଓ ସାରା ଶରୀର ପରୀକ୍ଷା ପାଇଁ ତାର (wire) ଦ୍ୱାରା ବାନ୍ଧିଥିଲେ । ଏଥିପାଇଁ ଏକ ମୂଲ୍ୟବାନ ଲାବୋରେଟେରୀ ସାଙ୍ଗରେ ଆଣିଥିଲେ । ଧ୍ୟାନ କାଳରେ ମୋର ହୃଦ୍ ସ୍ପନ୍ଦନ ପ୍ରାୟ ୧୪୦ ଥର ହୋଇ ଯାଇଥିଲା । ଏହା ସାଧାରଣ ହୃଦ୍ ସ୍ପନ୍ଦନଠାରୁ ପ୍ରାୟ ଦୁଇଗୁଣ । ମାତ୍ର ଧ୍ୟାନ ପରେ ଏମାନେ ଦେଖିଲେ ମନ ସମ୍ପୂର୍ଣ୍ଣ ଶାନ୍ତ, ସମାହିତ । ସେମାନେ ଆଶ୍ଚର୍ଯ୍ୟ

ହୋଇ କହିଲେ– ମୋର ଆମେରିକା ଯିବାର ଇଚ୍ଛାଥିଲେ ସେମାନେ ଏଥିପାଇଁ ସମସ୍ତ ବ୍ୟବସ୍ଥା କରିବେ । କାରଣ ମୁଁ କୁଆଡେ ବିଶ୍ୱର ଜଣେ ଶ୍ରେଷ୍ଠ ଶାନ୍ତିର ସୌଦାଗର । ମନର ସ୍ଥିରତା ଆଣିବା ପାଇଁ ଏକ ଶକ୍ତିଶାଳୀ ଗୁଳିକାଟିଏ ମୋ ପାଖରେ ଅଛି । ଏହି କଥା ମୋର ବିଶ୍ୱାସ ହେଲା ନାହିଁ । ସେମାନଙ୍କ ଦେଇଥିବା ଠିକଣା ମୁଁ ହଜାଇ ଦେଲି । ଏହି କଥା ଉପରେ ଗୁରୁତ୍ୱ ଦେଲି ନାହିଁ ।

ପ୍ରାୟ ବର୍ଷେ ଦୁଇବର୍ଷ ଗଲିଗଲା । କ୍ରିଷ୍ଣା ଦାର୍ଯ୍ୟାନାନି ନାମରେ ଜଣେ ଭାରତୀୟ ଦକ୍ଷିଣ ଆମେରିକାର ବୋଗଟା ଅଧିବାସୀ ଶିଷ୍ୟ ଗୁରୁଦେବଙ୍କୁ ବିଦେଶକୁ ନେବାପାଇଁ ଚେଷ୍ଟା କରିଥିଲେ । ସ୍ଥିର ହେଲା ଗୁରୁଦେବ ଓ ମୁଁ ବିଦେଶକୁ ଯିବୁଁ । ଇଉରୋପ, ଦକ୍ଷିଣ ଆମେରିକା ଓ ଉତ୍ତର ଆମେରିକାର ଅନେକ ସ୍ଥାନରେ କ୍ରିୟାଯୋଗ ପ୍ରସାର ପାଇଁ ପ୍ରୋଗ୍ରାମ କରାଗଲା । ମୋ' ଲାଗି ମଧ୍ୟ କୋଡ଼ିଏ ହଜାର ଟଙ୍କାର ପ୍ଲେନ ଟିକେଟ ଆସିଗଲା । ମାତ୍ର ସେ ସମୟରେ ଇମାର୍ଜେନ୍‌ସି ଚାଲୁଥିବାରୁ ମୋର ପାସପୋର୍ଟ ଓ ଭିସା ତଥା ସରକାରୀ ଅନୁମତି ପତ୍ର ଠିକ୍ ସମୟରେ ଯୋଗାଡ଼ ହୋଇ ପାରିଲା ନାହିଁ । ଗୁରୁଦେବ ବିଦେଶ ଯିବାକୁ ଚାହୁଁ ନଥିଲେ । ମାତ୍ର ମୁଁ ଟିକେଟ ଫେରାଇଦେଇ ତାଙ୍କୁ କ୍ରିଷ୍ଣା ଦାର୍ଯ୍ୟାନାନିଙ୍କ ସହ ବିଦେଶ ଯିବାପାଇଁ ଅନୁରୋଧ କଲି । ଏହି ଥର ଗୁରୁଦେବ ବିଦେଶରେ ଯେପରି ସମ୍ମାନିତ ହେଲେ ଏବଂ ବିଦେଶରେ ଯୋଗ ସମ୍ପର୍କରେ ଆଗ୍ରହ ଦେଖିଲେ ତାହାପରେ ପ୍ରତିବର୍ଷ ବିଦେଶ ଭ୍ରମଣ ତାଙ୍କ ପକ୍ଷରେ ଅନିବାର୍ଯ୍ୟ ହୋଇ ପଡ଼ିଲା ।

ମୋର ବାଲେଶ୍ୱର ଫକୀର ମୋହନ କଲେଜକୁ ବଦଳି ହୋଇ ଯାଇଥିଲା । ଗୁରୁଦେବ ମଝିରେ ମଝିରେ ବାଲେଶ୍ୱର ଜିଲ୍ଲା ମୁନ୍‌ସିଫ

ଶ୍ରୀ ଶିବରାମ ରଥଙ୍କ ଘରେ ଆସି ରହୁଥିଲେ । ମୁଁ ପରିବାର ପୁରୀରେ ରଖି କଡ଼ାର ଆଶ୍ରମରେ ଧ୍ୟାନ ପାଇଁ ଛୁଟିରେ ଯେଠାକୁ ଯାଉଥିଲି । ଗୁରୁଦେବ ବାଲେଶ୍ୱର ଆସିଲେ ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଉଥିଲି । ବାଲେଶ୍ୱରରେ ମଧ୍ୟ ଏକ କ୍ରିୟାଯୋଗ ସାଧକ ଗୋଷ୍ଠୀ ସୃଷ୍ଟି ହୋଇଗଲେ । ସେହି ସମୟରେ ଆଲ୍‌ଫ୍ରେଡ୍ ପାଲିନ ନାମରେ ଜଣେ ଇଉରୋପୀୟ ଅଷ୍ଟ୍ରିଆର ଶିଷ୍ୟଠାରୁ ପତ୍ର ପାଇଲି ଯେ ଆମେରିକାରେ ବିଭିନ୍ନ ସିନେମା ହଲ୍‌ରେ ମେନିଙ୍ଗର ଫାଉଣ୍ଡେସନ୍ ପ୍ରଯୋଜିତ । 'Yoga for the west' ନାମରେ ଏକ ବୈଜ୍ଞାନିକ ଫିଲମ୍ ପ୍ରଦର୍ଶିତ ହେଉଛି । ଏଥିରେ ବୈଜ୍ଞାନିକ ବ୍ୟାଖ୍ୟା ସହ ମୋର ଧ୍ୟାନ ଓ ବୈଜ୍ଞାନିକ ଗବେଷଣାର ଫଳ ମଧ୍ୟ ପ୍ରଦର୍ଶିତ ହେବା ସେ ଦେଖିଛନ୍ତି । ପରେ ସେମାନେ ଏହି ଗବେଷଣାକୁ Beyond Bio-Feedback ନାମରେ ଏକ ବହିରେ ସଂଯୋଜିତ କରିଥିଲେ । ଏଥିରେ କ୍ରିୟାଯୋଗର ପ୍ରଭବ ସହ ବୌଜ୍ଞାନିକ ମୋର ଧ୍ୟାନ ସଂପର୍କରେ ମତ ଦେଇଥିଲେ । – ଆବେଗର ଚଞ୍ଚଳ । ଯୋଗୁଁ ହାର୍ଟ୍ ବିଟ୍ ୧୪୦ ପର୍ଯ୍ୟନ୍ତ ହେଲେ ମଧ୍ୟ ମସ୍ତିଷ୍କରେ Smooth Alpha Light ଦ୍ୱାରା ମସ୍ତିଷ୍କ ସଂପୂର୍ଣ୍ଣ ଶାନ୍ତ ସମାହିତ ଜଣା ପଡୁଥିଲା । ଏହା ଏକ ଆଶ୍ଚର୍ଯ୍ୟ ଜନକ ତଥ୍ୟ । ମସ୍ତିଷ୍କର ଏହି ଶାନ୍ତ ସମାହିତ ଅବସ୍ଥା ପାଇଁ କ୍ରିୟାଯୋଗର ପ୍ରଭବଶାଳୀ ପ୍ରକ୍ରିୟା ହିଁ ଦାୟୀ । ଡକ୍ଟର ଏଲ୍‌ମାର ଗ୍ରୀନ୍ ଓ ଆଲିସ୍ ଗ୍ରୀନ୍ ମୋତେ କହିଥିଲେ - ଆମେରିକାରେ ସବୁ ଅଛି, ମାତ୍ର ଶାନ୍ତି ପାଇବାର ବାଟ ଜଣା ନାହିଁ । ମୋ ପାଖରେ ବିଶ୍ୱର ଏହି ଶ୍ରେଷ୍ଠ ସମ୍ପଦଟି ଥିବା ଜାଣିବା ପରେ ସେମାନେ ମୋତେ ବିଦେଶ ନେବାକୁ ଆଗ୍ରହୀ ହୋଇ ଉଠିଥିଲେ । ମୁଁ ଜାଣିଥିଲି, ଏହା ଗୁରୁଦେବଙ୍କ କରୁଣାର ଫଳ । ନିଜବୋଧର ଆନନ୍ଦରେ ନିଜେ ଥିଲି ବିଭୋର । ପରେ

ଛାର୍ଣ୍ଣିଲି ଡ: ଏଲ୍‌ମାର ଓ ଡ: ଆଲିସ୍ ଗ୍ରୀନ୍‌ଙ୍କ ମନବୈଜ୍ଞାନିକ ତଥ୍ୟ ସମ୍ପନ୍ନ ଏହି ଗ୍ରନ୍ଥଟି ଆମେରିକାରେ ବିଶେଷ ଜନପ୍ରିୟତା ଅର୍ଜନ କରିଥିଲା ।

ଗୁରୁଦେବଙ୍କ କ୍ରିୟାଯୋଗ ବିଶ୍ୱରେ ପ୍ରସାରିତ ହେବାପାଇଁ ମୋ ମଧ୍ୟରେ ଏକ ସଙ୍କଳ୍ପ କ୍ରମଶଃ ଜାଗ୍ରତ ହୋଇ ଯାଇଥିଲା । ତାଙ୍କ-ଠାରୁ ବିଭିନ୍ନ କାଳରେ ଯେଉଁ ପ୍ରବଚନ ସଂଗ୍ରହ କରିଥିଲି ୧୯୭୨ ସାଲରେ ତାହାକୁ 'କ୍ରିୟାଯୋଗ ଦର୍ଶନ' ନାମରେ ସମ୍ପାଦନା କରିଥିଲି । ବ୍ରହ୍ମଚାରୀ ଭକ୍ତି ପ୍ରକାଶ ୧୯୭୩ ଜାନୁୟାରୀ ପାଞ୍ଚ ତାରିଖରେ ଗୁରୁ-ଦେବଙ୍କଠାରୁ ସନ୍ୟାସ ଗ୍ରହଣ କରି ସ୍ୱାମୀ ପ୍ରେମାନନ୍ଦ ଗିରି ନାମରେ ନାମିତ ହେଲେ । ସେ ଥିଲେ ଗୁରୁଦେବଙ୍କ ପ୍ରଥମ ଓ ପ୍ରିୟତମ ସନ୍ୟାସୀ ସନ୍ନ୍ୟାସୀ ଶିଷ୍ୟ । ମୁ ଜାଣେ, କଡାର ଆଶ୍ରମର ବିକାଶ ଓ ଏବେ ପ୍ରତିଷ୍ଠିତ ଅନ୍ୟାନ୍ୟ ଆଶ୍ରମ ପ୍ରତିଷ୍ଠା ପାଇଁ ତାଙ୍କ ଅବଦାନ ସବୁଠାରୁ ବେଶି । ଗୁରୁଦେବ ବାହାରେ କ୍ରିୟାଯୋଗ ପ୍ରସାର ପାଇଁ ଭ୍ରମଣ କରୁଥିଲେ ଏବଂ କଡାର ଆଶ୍ରମର ଉପସଙ୍ଘପତି ଭାବରେ ସ୍ୱାମୀ ପ୍ରେମାନନ୍ଦ ହିଁ ଏହି ଅନୁଷ୍ଠାନକୁ ପୁତ୍ରୋପମ ପାଳନ କରୁଥିଲେ । ଗୁରୁଦେବଙ୍କର ସମସ୍ତ ବହି ପ୍ରକାଶ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ପରେ ସେ କଡାର ଆଶ୍ରମରୁ ବିଦାୟ ନେଇ ଗୁରୁଦେବଙ୍କ ସହାୟତାରେ ଗଙ୍ଗାସାଗର ତଟରେ ଏକ କ୍ରିୟାଯୋଗ ଆଶ୍ରମ ନିର୍ମାଣ କରିଛନ୍ତି । ସାଂଗଠନିକ ଦାୟିତ୍ୱ ମୁକ୍ତ ହୋଇ ଏବେ ସେ ଗଭୀର ସାଧନାରେ କପିଳତୀର୍ଥ ଗଙ୍ଗା-ସାଗରରେ ଆତ୍ମ ସମାହିତ ହୋଇ ରହିଛନ୍ତି ।

ସ୍ୱାମୀ ପ୍ରେମାନନ୍ଦ ଗିରିଙ୍କ ସହଯୋଗରେ ଇଂରାଜୀ ଅଧ୍ୟାପକ ରମେଶ ଚନ୍ଦ୍ର ପଟ୍ଟନାୟକ ଓ ମୁଁ ଶିଷ୍ୟମାନଙ୍କଠାରୁ ଯେଉଁ କ୍ରିୟାଯୋଗ ତଥା ଗୁରୁଦେବଙ୍କ ସମ୍ପର୍କରେ ପ୍ରବନ୍ଧ ସଂଗ୍ରହ କରିଥିଲୁ, କଡ଼ାର କ୍ରିୟା-

ବାନ୍ ସମ୍ମେଳନ ତରଫରୁ ଶ୍ରୀ ଗୋପାଳକୃଷ୍ଣ ଦାସଙ୍କ ସମ୍ପାଦନାରେ ତାହା ଅଭିନନ୍ଦନ ଗ୍ରନ୍ଥ ଭାବରେ Swami Hariharananda, the Supreme Kriya yogi ନାମରେ ୧୯୭୭ ମେ ୨୭ ତାରିଖରେ ପ୍ରକାଶିତ ହୋଇଥିଲା । ଏହି ଗ୍ରନ୍ଥଟି ପରେ ସ୍ପାନିସ୍ ଭାଷାରେ ବୋଗଟାରୁ ଓ ଏହାର ସଂକ୍ଷିପ୍ତ ବିଦେଶୀ ସଂସ୍କରଣ ବାହାରିଥିଲା । ଏବେ ନିକଟରେ ଡ଼ଃ ଶେଷ ନାରାୟଣ ଚନ୍ଦେଲଙ୍କ ଅନୁବାଦିତ ହିନ୍ଦୀ ସଂକରଣ ସମ୍ବଲପୁରର ଶ୍ରୀ ଲକ୍ଷ୍ମୀ ନାରାୟଣ ଅଗ୍ରୱାଲ ଓ ଝାରସୁଗୁଡ଼ାର ଶ୍ରୀ ହରିରାମ ସିଂହାଣିଆ ତଥା ନାଗପୁରର କ୍ରିୟାବାନଗଣଙ୍କ ଆର୍ଥିକ ଅନୁଦାନରେ କ୍ରିୟାଯୋଗ ଧ୍ୟାନ କେନ୍ଦ୍ର, ସମ୍ବଲପୁର ଓ ଗଉରକେଲାର ପ୍ରଚେଷ୍ଟାରେ ପ୍ରକାଶିତ ହୋଇଛି । କଡ଼ାର ଆଶ୍ରମ ହୀରକ ଜୁବୁଲି ଅବସରରେ ଏକ ଇଂରାଜୀ ଅଭିନନ୍ଦନ ଗ୍ରନ୍ଥ ରମେଶ ଚନ୍ଦ୍ର ପଟ୍ଟନାୟକ ଓ ମୋର ସମ୍ପାଦନାରେ ୨୨ ମାର୍ଚ୍ଚ ୧୯୭୮ ବିଷୁବ ସଂକ୍ରମଣ ତିଥିରେ ପ୍ରକାଶିତ ହୋଇଥିଲା । ପରେ ଆମେ 'କ୍ରିୟାବାନ୍' ନାମରେ ଏକ ଇଂରାଜୀ ପତ୍ରିକା ପ୍ରକାଶ ପାଇଁ ଚେଷ୍ଟା କରିଥିଲୁ । ଏହା ନିୟମିତ ପ୍ରକାଶିତ ହୋଇନପାରି ମାର୍ଚ୍ଚ ୨୨ ଅବସରରେ କଡାର ଆଶ୍ରମ ପ୍ରତିଷ୍ଠା ଦିବସରେ ପ୍ରକାଶିତ ହେବାପାଇଁ ଚେଷ୍ଟା କରାଯାଉଛି ।

ଓଡ଼ିଆ 'କ୍ରିୟାଯୋଗ ଦର୍ଶନ' ପରିବର୍ଦ୍ଧିତ ରୂପ ଗୁରୁଦେବଙ୍କର 'କ୍ରିୟାଯୋଗ ସାଧନ ତତ୍ତ୍ୱ' ତଥା 'ହିନ୍ଦୁପୂଜା ରହସ୍ୟ' ଓ ବୈଜ୍ଞାନିକ କ୍ରିୟାଯୋଗ ପଦ୍ଧତି' ମୋର ସମ୍ପାଦନାରେ ଓଡ଼ିଆ ଭାଷାରେ ପ୍ରକାଶିତ ହେଲା । 'ହିନ୍ଦୁପୂଜା ରହସ୍ୟ'ର ବଙ୍ଗଳା ସଂସ୍କରଣ ମଧ୍ୟ ପ୍ରକାଶିତ ହୋଇଥିଲା । ରମେଶ ବାବୁ ଓ ମୁଁ ଯେଉଁ ଇଂରେଜୀ କ୍ରିୟାଯୋଗ ଗ୍ରନ୍ଥ Kriyayoga the Scientific technique of Soul

culture ସଂକଳନ କରିଥିଲୁ ତାହାର ପରିବର୍ଦ୍ଧିତ ରୂପ, ବିଭିନ୍ନ ବିଦେଶୀ ସଂସ୍କରଣ, ବିଭିନ୍ନ ବିଦେଶୀ ଭାଷାରେ ଅନୁବାଦ ହେବା ଦ୍ୱାରା ଗୁରୁଦେବଙ୍କ କ୍ରିୟାଯୋଗ ସମଗ୍ର ବିଶ୍ୱରେ କ୍ରମଶଃ ପ୍ରସାର ଲାଭ କରିବାରେ ବିଶେଷ ସାହାଯ୍ୟ କଲା । ଗୁରୁଦେବଙ୍କ 'Isha Upanishad' ମଧ୍ୟ ପ୍ରକାଶିତ ହୋଇଥିଲା ୧୯୮୨ ଖ୍ରୀଷ୍ଟାବ୍ଦରେ । ଡାକ୍ତର ସୁଧାଂଶୁ ଶେଖର ଚନ୍ଦ୍ରଙ୍କ ନେତୃତ୍ୱରେ ରାଉରକେଲା କ୍ରିୟାଯୋଗ କେନ୍ଦ୍ରରୁ ବାର୍ଷିକ ଅଭିନନ୍ଦନ ଗ୍ରନ୍ଥ ପ୍ରତିବର୍ଷ ପ୍ରକାଶ ପାଇ ଆସୁଛି । ଯେଉଁ କ୍ରିୟାଯୋଗ କେବଳ କରାର ଆଶ୍ରମର ସାଧନ ତୀର୍ଥରେ ବହୁଦିନ ଧରି ସଂଗୁପ୍ତ ଥିଲା, ତାହା ସୂର୍ଯ୍ୟାଲୋକ ଦର୍ଶନ କରିଛି ।

୧୯୭୫ ସାଲରୁ ଗୁରୁଦେବ ମୋତେ ଦୀକ୍ଷା ଦେବାପାଇଁ ଏକ ପତ୍ରରେ ନିର୍ଦ୍ଦେଶ ଦେଇଥିଲେ । ତା ପୂର୍ବରୁ ମଧ୍ୟ ଦୀକ୍ଷା ଦେବାକୁ କହୁଥିଲେ ମାତ୍ର ଦୀର୍ଘକାଳ ଧରି ଏହାର ତାତ୍ପର୍ଯ୍ୟ ମୁଁ ବୁଝି ପାରି ନଥିଲି । ସେ କହିଥିଲେ ଲାହିଡୀ ବାବା ଗୃହୀ ଥିଲେ ମଧ୍ୟ ଯେପରି ସାଧନା ଦାନ କରିଥିଲେ, ମୋତେ ସେହି ଭୂମିକା ଗ୍ରହଣ କରିବାକୁ ହେବ । ପୁରୀରେ ଥରେ ପ୍ରାୟ ୧୫ ବର୍ଷ ପୂର୍ବରୁ ସେ କହିଥିଲେ ଦିନେ ମୋତେ ପଶ୍ଚିମ ଓଡ଼ିଶାକୁ ଆସିବାକୁ ପଡ଼ିବ ଓ ସେଠାରେ ଗୁରୁର ଭୂମିକା ନିଶ୍ଚୟ ଗ୍ରହଣ କରିବାକୁ ହେବ । ଆଶ୍ଚର୍ଯ୍ୟର କଥା, ଏବେ ତାଙ୍କରି ବାଣୀ କ୍ରମଶଃ ଫଳ ପ୍ରସୂ ହେବାକୁ ଆରମ୍ଭ କରିଛି । ସମ୍ବଲପୁରରେ ବହୁ କ୍ରିୟାବାନ ଯେପରି ମୋତେ ଗୁରୁଦେବଙ୍କ କାର୍ଯ୍ୟରେ ସହାୟତା କରିବା ପାଇଁ ସଂକଳ୍ପ ବଦ୍ଧ, ତାହା ଦେଖି ଅନୁଭବ କରୁଛି ଯେ ଏକ ଶକ୍ତିଶାଳୀ କ୍ରିୟାଯୋଗ ସାଧନାର ବିପ୍ଳବ ସଂଘଟିତ ହେବାକୁ ଯାଉଛି । ସମ୍ବଲପୁରରେ ଅବସ୍ଥାପିତ ହେବାପରେ

ଗୁରୁଦେବ ଅନେକ ପତ୍ରରେ ତଥା କେସେଟରେ ପ୍ରେରଣା ଦାୟୀ ଅନୁରୋଧ କରି କହିଥିଲେ– ଭବିଷ୍ୟତରେ ମୋତେ ହିଁ ଦିନେ ବିଶ୍ୱରେ କ୍ରିୟାଯୋଗ ପ୍ରସାରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବାକୁ ହେବ। ସମଗ୍ର ବିଶ୍ୱର କ୍ରିୟାବାନ ଜନଗଣଙ୍କ ସହ ଧ୍ୟାନ ଓ ସାଧନା କରି ମୋର ଜୀବନକୁ ସାର୍ଥକ କରିବାକୁ ହେବ। ଏହାହିଁ ମୋର ସାଧନାକୁ ପରିପୂର୍ଣ୍ଣ କରିବାର ଏକମାତ୍ର ଉପାୟ। ତାଙ୍କର କରୁଣାରୁ ତାଙ୍କରି କାର୍ଯ୍ୟ ଯେ ସୁସମ୍ପନ୍ନ ହୋଇଯିବ ଏବଂ ସେହି ମହାମାନବର ପଥ ଅନୁସରଣ କରୁଁ କରୁଁ ବହୁ ଜନ୍ମର ସୀମା, ଏ ପାର୍ଥିବ ଜନ୍ମ ମରଣର ସୀମା ସହଜରେ ଅତିକ୍ରମ କରିଯିବି ଏ ବିଷୟରେ ଦୃଢ ପ୍ରତ୍ୟୟ ଜନ୍ମିଛି।

## ବିଦେଶରେ ସ୍ୱାମୀ ହରିହରାନନ୍ଦ :

ବିଜ୍ଞାନ ଭିତ୍ତିକ କ୍ରିୟାଯୋଗ ମାନବ ଜାତିର ଦ୍ରୁତ ଅଭ୍ୟୁତ୍‌ଥାନ ଓ ବିବର୍ତ୍ତନ ପ୍ରକ୍ରିୟାରେ ମାନବକୁ ଦେବତ୍ୱରେ ଅଧିଷ୍ଠିତ କରିବା ପାଇଁ ଉଦ୍ଦିଷ୍ଟ। ମହାମୁନୀ ବାବାଜୀଙ୍କର ଯୁଗାନ୍ତ ବ୍ୟାପୀ ଏହି ଉଦ୍ଦେଶ୍ୟକୁ ସଫଳ କରିବା ପାଇଁ ବହୁ ମହାତ୍ମା ଧରାପୃଷ୍ଠରେ ଅବତରଣ କରିଛନ୍ତି। ପରମହଂସ ଯୋଗାନନ୍ଦଙ୍କ ପରେ ସ୍ୱାମୀ ହରିହରାନନ୍ଦ ସେହି ମହାନ୍ କର୍ମକୁ ସଫଳ କରିବାପାଇଁ ଆଜୀବନ ପ୍ରୟାସ କରି ଆସିଛନ୍ତି। ସେଥିପାଇଁ କ୍ରିୟାବାନ୍‌ଙ୍କ ଦ୍ୱାରେ ଦ୍ୱାରେ କରୁଣାଘନ ମୂର୍ତ୍ତିରେ ପ୍ରାଚୀନ ଯୁଗର ମହାପୁରୁଷ ବୁଦ୍ଧ ଓ ଶଙ୍କରଙ୍କ ଭଳି ସାରା ଭାରତ ପରିଭ୍ରମଣ କରିଛନ୍ତି। ଭାରତର ଯୋଗ ସଂସ୍କୃତିର ଶ୍ରେଷ୍ଠ ପ୍ରତିନିଧି ଭାବରେ ପରମହଂସ ଯୋଗାନନ୍ଦ ତାଙ୍କର ସମଗ୍ର ଜୀବନ ଆମେରିକାରେ କଟାଇ ଦେଲେ। ଶ୍ରୀଯୁକ୍ତେଶ୍ୱରଜୀଙ୍କ ସାଧନତୀର୍ଥ କରାର ଆଶ୍ରମ କ୍ରିୟାଯୋଗ ସାଧକ-

ବର୍ଗଙ୍କର ପ୍ରେରଣାର ସ୍ରୋତ ଭାବରେ କ୍ରିୟାଯୋଗ ସାଧନାର ଯଥାର୍ଥ ଧାରାକୁ ସଂରକ୍ଷିତ କରି ଆସିଥିଲା । ସ୍ୱାମୀ ହରିହରାନନ୍ଦ ପ୍ରାଚୀନ ଋଷି ପରମ୍ପରାର ଯଥାର୍ଥ ପ୍ରତିନିଧି ଭାବରେ ଭାରତରେ ବିଶେଷତଃ ଓଡ଼ିଶାରେ ସେହି ଧାରାକୁ ପୁନର୍ଜୀବିତ କରିଛନ୍ତି । ଯୋଗଦା ସହିତ ସଂଯୁକ୍ତ ଥିବା ବେଳେ ବିଦେଶର ବହୁ କ୍ରିୟାବାନ ଶିଷ୍ୟ ତାଙ୍କୁ ଭାରତ ବାହାରକୁ ଯିବାପାଇଁ ଆମନ୍ତ୍ରଣ କରିଥିଲେ ମଧ୍ୟ ଯୋଗଦା ଏଥିପାଇଁ ବାଧାଦେଇ ଆସୁଥିଲା । ମାତ୍ର କରାର ଆଶ୍ରମ ଯୋଗଦାର ପ୍ରତ୍ୟକ୍ଷ ପ୍ରଭାବରୁ ମୁକ୍ତ ହେବାପରେ ଶ୍ରୀଯୁକ୍ତେଶ୍ୱରଜୀଙ୍କ ପରମ୍ପରାର ପ୍ରତିନିଧି ଭାବରେ ହରିହରାନନ୍ଦ ବିଦେଶ ଯିବାପାଇଁ ଆଉ ବାଧା ରହିଲା ନାହିଁ । ପୃଥିବୀର ବିଭିନ୍ନ ସ୍ଥାନରୁ ଲୋକେ କ୍ରମଶଃ କରାର ଆଶ୍ରମକୁ ଆସିବାକୁ ଲାଗିଲେ । ଏହା ଏକ ଆନ୍ତର୍ଜାତିକ ସାଧନା କ୍ଷେତ୍ରରେ ପରିଣତ ହୋଇଗଲା ।

ସ୍ୱିଜରଲାଣ୍ଡ ଓ ଜର୍ମାନୀର ଶିଷ୍ୟଗଣଙ୍କ ଆମନ୍ତ୍ରଣରେ ଶେଷରେ ସ୍ୱାମୀ ହରିହରାନନ୍ଦ ୧୯୭୪ ମସିହାରେ ବିଦେଶରେ କ୍ରିୟାଯୋଗ ଧ୍ୟାନ ଶିକ୍ଷା ଦାନ ପାଇଁ ପ୍ରଥମେ ଯାତ୍ରା କରିଥିଲେ । ଏ ସଂପର୍କରେ ଗୁରୁ ଦେବଙ୍କଠାରୁ ମୁଁ ଯେଉଁ ତଥ୍ୟ ସଂଗ୍ରହ କରିଥିଲି ତାହା ଏଠାରେ ଉଲ୍ଲେଖ କରୁଛି । ଗୁରୁଦେବଙ୍କର ବିଦେଶ ଯିବାପାଇଁ ଇଚ୍ଛା ନଥିଲା । ସ୍ୱିଜରଲାଣ୍ଡର ଛଅ ଜଣ ଶିଷ୍ୟ ତୃତୀୟଥର କରାର ଆଶ୍ରମକୁ ଆସି ବାର ବାର ତାଙ୍କୁ ଦେଶକୁ ଯିବାପାଇଁ ଅନୁରୋଧ ଜଣାଇଲେ । ସେମାନେ କହିଲେ– ଆପଣ ସର୍ବଦା ଭାରତର ଶିଷ୍ୟମାନଙ୍କ ପାଇଁ ସମୟ ଦେଇ ଆସିଛନ୍ତି । ମାତ୍ର ଭାରତ ବାହାରେ ମଧ୍ୟ ଶହ ଶହ ସତ୍ୟ ସନ୍ଧାନୀ ଅପେକ୍ଷା କରି ରହିଛନ୍ତି । ଆପଣ କ'ଣ ସେମାନଙ୍କୁ ସାହାଯ୍ୟ କରିବେ ନାହିଁ ? ଆପଣ କଣ କେବଳ ଭାରତ ପାଇଁ ଜନ୍ମ

ନେଇଛନ୍ତି । ଶ୍ରୀଯୁକ୍ତେଶ୍ୱରଜୀ ଓ ପରମହଂସ ଯୋଗାନନ୍ଦଙ୍କର ଇଚ୍ଛା ଥିଲା ବହୁ ଆତ୍ମଦର୍ଶୀ ସାଧକ ବିଦେଶ ଯାଇ କ୍ରିୟାଯୋଗ ପ୍ରସାର କରିବେ । ତାଙ୍କର ଏହି ମହାନ୍ ଇଚ୍ଛାର ପୂର୍ତ୍ତିପାଇଁ ଆପଣ କ'ଣ ବିଦେଶ ଯିବେ ନାହିଁ ? ଏହି ଗଭୀର ପ୍ରାର୍ଥନା ଗୁରୁଦେବଙ୍କୁ ଅଭିଭୂତ କରି ଦେଇଥିଲା । ତେଣୁ ସେ କ୍ରିୟାଯୋଗ ପ୍ରସାର ଉଦ୍ଦେଶ୍ୟରେ ବିଦେଶ ଯିବା ପାଇଁ ସ୍ଥିର କରିଥିଲେ ।

୩ ତାରିଖ ଜୁନ୍ ୧୯୭୪ ସ୍ୱାମିଜୀ ଦିଲ୍ଲୀରୁ ଏୟାର ଫ୍ରାନ୍ସ ପ୍ଲେନରେ ଜୁରିକ ଗଲେ । ଏହି ପ୍ଲେନଟି ଖୁବ୍ ବଡଥିଲା, ପ୍ରାୟ ୩୫୦ ଜଣ ଯାତ୍ରୀ ନେଇ ପାରୁଥିଲା । ଉଡ଼ାଜାହାଜର ଯାତ୍ରୀମାନେ ସ୍ୱାମୀ ହରିହରାନନ୍ଦ ସୌମ୍ୟ ଋଷି ସୁଲଭ ରୂପ ଦେଖି ଆକର୍ଷିତ ହୋଇ ଯୋଗ ସମ୍ପର୍କରେ ଜାଣିବାକୁ ଘେରି ଯାଇଥିଲେ । ସେମାନେ ଯେତେବେଳେ ଜାଣିପାରିଲେ ଯେ ସ୍ୱାମୀଜୀ ଫ୍ରାନ୍ସ, ସ୍ୱିଜରଲାଣ୍ଡ, ବେଲଜିଅମ୍, ଲଣ୍ଡନ, ଜର୍ମାନୀ, ହଲାଣ୍ଡ, ଇଟାଲୀ ଓ ରୋମ୍ ଭ୍ରମଣ କରିବାକୁ ଯିବେ, କେତେକ ଭଦ୍ରଲୋକ ପ୍ରାୟ, ସ୍ୱିଜରଲାଣ୍ଡ ଓ ରୋମ୍‌ରୁ ତାଙ୍କର ଅତିଥି ହେବାକୁ ଅନୁରୋଧ କଲେ । ମାତ୍ର ସ୍ୱାମିଜୀ କହିଲେ ଯେ ଇଉରୋପର ଶିଷ୍ୟଗଣଙ୍କ ଦ୍ୱାରା ତାଙ୍କର କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ କରଯାଇଛି । ଏହି ଭିଡ ଦେଖି ପ୍ଲେନର କଣ୍ଡକ୍ଟର ଜଣେ ଦୁଇଜଣ କରି ସ୍ୱାମିଜୀଙ୍କ ସହିତ କଥାବାର୍ତ୍ତା ହେବା ନିରପଦ ବୋଲି ସୂଚେଇ ଦେଲେ । ସାରା ରାତି ସ୍ୱାମିଜୀଙ୍କୁ କ୍ରିୟାଯୋଗର ଉପଯୋଗିତା ସମ୍ପର୍କରେ ଯାତ୍ରୀମାନଙ୍କୁ ବୁଝାଇବାକୁ ପଡ଼ିଥିଲା । ପରଦିନ ସେ ପ୍ୟାରିସ୍‌ରେ ବିଭିନ୍ନ ସ୍ଥାନରେ ଶିଷ୍ୟମାନଙ୍କ ସହ ଭ୍ରମଣ କରିଥିଲେ । ସନ୍ଧ୍ୟାରେ ବହୁଲୋକ ତାଙ୍କଠାରୁ କ୍ରିୟାଯୋଗ ସାଧନା ଗ୍ରହଣ କରିଥିଲେ । ଗୁରୁଦେବଙ୍କ ମତରେ ପ୍ୟାରିସ୍ ଏକ ରମଣୀୟ ନଗରୀ । ଏହା

ଅତ୍ୟନ୍ତ ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ ପୂର୍ଣ୍ଣ । ସବୁ କିଛି ଏଠାରେ ପରିଷ୍କାର ପରିଚ୍ଛନ୍ନ । ସେଠିକାର ଅଧିବାସୀଗଣ ବେଶ ସୁନ୍ଦର ଓ ସୌଷ୍ଠବ ପୂର୍ଣ୍ଣ । ଏହି ନଗରୀଟି ଫୁଲ ଓ ଫଳରେ ଚହଟିଛି । ଏହି ଫ୍ରାନ୍‌ସ ପରବର୍ତ୍ତୀ କାଳରେ କ୍ରିୟାଯୋଗର ଏକ ଶକ୍ତିଶାଳୀ କେନ୍ଦ୍ର ଭାବରେ କାର୍ଯ୍ୟ କରି ଆସିଛି । ଗୁରୁଦେବ ଓ ତାଙ୍କର କେତେକ ଶିଷ୍ୟ ଏଠାରେ କ୍ରିୟାଯୋଗ ପ୍ରସାର ପାଇଁ ଧ୍ୟାନ କେନ୍ଦ୍ରମାନ ପ୍ରତିଷ୍ଠା କରିଛନ୍ତି ।

ପରଦିନ ସ୍ୱାମିଜୀ ଅନ୍ୟ ଏକ ପ୍ଲେନରେ ସୁଇଜର ଲଣ୍ଡର ଜୁରିଚ୍ ଯାଇଥିଲେ । ଏୟାର ପୋର୍ଟର ପରିଚ୍ଛନ୍ନତା ତାଙ୍କୁ ଖୁବ୍ ଭଲ ଲାଗିଥିଲା । ସବୁ କାର୍ଯ୍ୟ ସ୍ୱୟଂଚାଳିତ ଯନ୍ତ୍ର ଦ୍ୱାରା ପରିଚାଳିତ ହେଉଥିଲା । ଦର୍ଶକ ପ୍ରତୀକ୍ଷାଳୟରେ ସୁଇଜର ଲଣ୍ଡ, ହଲଣ୍ଡ ଓ ଜର୍ମାନୀ ଶିଷ୍ୟମାନେ ପୁଷ୍ପମାଲ୍ୟ ସହିତ ଅପେକ୍ଷା କରିଥିଲେ । ତାଙ୍କୁ ଦେଖିବା କ୍ଷଣି ସେମାନେ ଦଉଡ଼ି ଆସି ଭାରତୀୟ ରୀତିରେ ତାଙ୍କ ପାଦରେ ଗଭୀର ସମ୍ମାନ ସହକାରେ ପ୍ରଣାମ କରିଥିଲେ । ଏୟାର ପୋର୍ଟର ଅଫିସରଟି ସ୍ୱାମିଜୀଙ୍କ ଜିନିଷ ପତ୍ର ନିରୀକ୍ଷା ପରେ ସେହିଭଳି ତାଙ୍କ ପାଦରେ ପ୍ରଣାମ କଲା । ପରଦିନ ସ୍ୱାମିଜୀ ଧ୍ୟାନସ୍ଥ ହେବାପାଇଁ ମୌନତା ପାଳନ କରିଥିଲେ । ସେଠାକାର ଖବର କାଗଜରେ ସ୍ୱାମିଜୀ ଦୁଇ ସପ୍ତାହ ରହି ୬ ତାରିଖ ଜୁନ୍‌ରେ ଭାଷଣ ଦେବେ ବୋଲି ବାହାରିଥିଲା । ମାତ୍ର ସ୍ୱାମିଜୀ ସେଠାରେ ଏକମାସ ରହିଥିଲେ ।

ବେଲଜିଅମରେ ସ୍ୱାମିଜୀଙ୍କର ଶିଷ୍ୟ ଡ଼: ବୋଷଙ୍କ ପ୍ରତିଷ୍ଠିତ ଏକ ଆଶ୍ରମ ଥିଲା । ସ୍ୱାମିଜୀ ଏହି ଆଶ୍ରମ ପରିଦର୍ଶନ କରିଥିଲେ । ଗତ ୧୯ ଟ୍ରା ବେଳେ ମଧ୍ୟ ବହୁ ଶିଷ୍ୟ ସେଠାରେ ସ୍ୱାମିଜୀଙ୍କ

ପ୍ରତୀକ୍ଷାରେ ଥିଲେ । ସ୍ୱାମିଜୀ ଗୁରିଗୋଟି ସ୍ଥାନରେ ଭାଷଣ ଦେଇଥିଲେ । ସେ ଏକ ଚର୍ଚ୍ଚରେ କ୍ରିୟାଯୋଗ ସମ୍ପର୍କରେ ଭାଷଣ ଦେଇଥିଲେ । ବହୁ ଉଚ୍ଚ ଶିକ୍ଷିତ ସମ୍ମାନାସ୍ପଦ ବ୍ୟକ୍ତି ଏହି ଭାଷଣ ଦ୍ୱାରା ପ୍ରଭାବିତ ହୋଇ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ ।

ବେଲଜିଅମରୁ ସ୍ୱାମିଜୀ ଲଣ୍ଡନକୁ ଅଳ୍ପଦିନ ପାଇଁ ଯିବାକୁ ଇଛା କରିଥିଲେ । ମାତ୍ର ତାଙ୍କ ପାଖରେ ଭିସା ନଥିଲା । ଭଗବାନଙ୍କୁ ସ୍ମରଣ କରି ଲଣ୍ଡନ ନଗରୀ ପ୍ରବେଶ କାମନାରେ ସେ ଗଲେ । ବେଲଜିଅମ୍‌ରୁ ଶହ ଶହ ଲୋକ ଲଣ୍ଡନ ଯାଉଥିଲେ । ଜଣେ ଚେକିଂ ଅଫିସର ତାଙ୍କ ପାଖକୁ ଆସି ପଚାରିଲା– ଆପଣ କଣ ଭାରତୀୟ ସନ୍ୟାସୀ ? ସ୍ୱାମିଜୀ କହିଲେ– ହଁ । ସେ ପଚାରିଲେ ଆପଣଙ୍କର ଛୁଆପିଲା କେତୋଟି ? ସ୍ୱାମିଜୀ କହିଲେ ମୁଁ ଆଜୀବନ ଅବିବାହିତ । ସେ କହିଲା, ଭାରତୀୟ ସାଧୁ– ମାନେ ଅତ୍ୟନ୍ତ ନିଷ୍ଠାପର ଓ ଚରିତ୍ରବାନ୍ । ସେ ଆହୁରି ଅନେକ ପ୍ରଶ୍ନ ପଚାରିଲା ଓ କହିଲା– ସ୍ୱାମିଜୀ, ଆପଣଙ୍କ ଦେବୋପମ ରୂପ ଦୂରରୁ ଦେଖି ମୁଁ ଆକର୍ଷିତ ହୋଇଗଲି । ସେ ତାଙ୍କର ପାସପୋର୍ଟ ଦେଖି ଭିସା ନ ଦେଖି ମୁଣ୍ଡ ମାରିଲା । ସ୍ୱାମିଜୀ କହିଲେ 'ତୁମେ ହି ମୋର ଭିସା । ମୁଁ ଲଣ୍ଡନରେ ସାତଦିନ ରହିବା ପାଇଁ ମୋତେ ଅନୁମତି ଦିଅ' । ଲଣ୍ଡନର କେଉଁ କେଉଁ ସ୍ଥାନ ଦର୍ଶନ କରିବାକୁ ସ୍ୱାମିଜୀ ଗ୍ରହାନ୍ତି ବୋଲି ସେ ପଚାରିଲା । ସ୍ୱାମିଜୀ କହିଲେ ରାଜପ୍ରାସାଦ, ହାଇଡ ପାର୍କ ଓ ଅକ୍ସଫୋର୍ଡ ଷ୍ଟ୍ରୀଟର ବିବେକାନନ୍ଦ ଆଶ୍ରମ ଓ ଅନ୍ୟ ଦର୍ଶନୀୟ ସ୍ଥାନ ଦେଖିବାକୁ ସେ ଆଗ୍ରହୀ । ସେ ଜଣେ ଭିସା ଅଫିସରଙ୍କ ପାଖକୁ ନେଇଯାଇ ଏକମାସ ଭିସା ଦେବା ପାଇଁ ଅନୁରୋଧ କଲା । ଭିସା ଅଫିସର କହିଲେ ଯେ ପୂର୍ବରୁ ସ୍ୱାମିଜୀ ଛ ମାସ ପାଇଁ ଦରଖାସ୍ତ କରି–

ଛନ୍ତି ' ସ୍ୱାମିଜୀ କହିଲେ ମୋ ତରଫରୁ ମୋ ଶିଷ୍ୟମାନେ ବନ୍ଦୋବସ୍ତ କରିଛନ୍ତି, ମାତ୍ର ମୁଁ ଲଣ୍ଡନରେ ଅତି ବେଶି ପନ୍ଦର ଦିନ ରହିବାକୁ ଚାହେଁ । ଭଗବାନ ସ୍ୱାମିଜୀଙ୍କୁ ସାହାଯ୍ୟ କରିଥିଲେ ଓ ସେ ଲଣ୍ଡନରେ ରହିବାକୁ ଭିସା ପାଇ ଯାଇଥିଲେ । ଲଣ୍ଡନରେ ପହଞ୍ଚିବା କ୍ଷଣି ବହୁ ଲୋକ ଟ୍ରେନ୍‌ରେ ତାଙ୍କୁ ଅନୁସରଣ କରିଥିଲେ । ସମସ୍ତେ ତାଙ୍କଠାରୁ କିଛି ଶୁଣିବାକୁ ଓ ଦୀକ୍ଷା ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ସେ ଦୁଇସ୍ଥାନରେ ଭାଷଣ ଦେଇଥିଲେ ଓ ବହୁଲୋକ ତାଙ୍କଠାରୁ ଦୀକ୍ଷା ନେଲେ ।

ତାହାପରେ ସ୍ୱାମିଜୀ ବେଲଜିଅମ ଫେରି ଆସିଲେ ଏବଂ ତାଙ୍କ ଶିଷ୍ୟ ଫ୍ରିଜ୍ ଓ ଡ୍ରାସ୍‌ମାଙ୍କ ସହ ଏକ କାରରେ ଏକ ପ୍ରସିଦ୍ଧ ସ୍ଥାନ ମାର୍ସବର୍ଗରେ ପହଞ୍ଚିଲେ । ସେଠାରେ କେତେକ ସାଧାରଣ ସଭାରେ ସେ ଭାଷଣ ଦେଇଥିଲେ । ସାମ୍ବାଦିକମାନେ ତାଙ୍କ ଭାଷଣକୁ ଖବର କାଗଜ ମାନଙ୍କରେ ଯଥାର୍ଥ ଭାବରେ ଉପସ୍ଥାପିତ କରିଥିଲେ । ସବୁ କାଗଜରେ ତାଙ୍କର ଫଟୋ ବାହାରିଥିଲା । ବହୁ ଲୋକ ତାଙ୍କ ଭାଷଣରେ ମୁଗ୍ଧ ହୋଇ ମହାତ୍ମା ମୋଜେସ୍, ମ୍ୟାଥ୍ୟୁ ଥୋମାସ୍ ସେଣ୍ଟ ଜୋହାଙ୍କ ପ୍ରତିନିଧି ଭାବରେ ତାଙ୍କୁ ଗ୍ରହଣ କରିଥିଲେ । ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟର ଆତ୍ମଦର୍ଶୀ ସାଧୁଗଣଙ୍କ ଭଳି ସେମାନଙ୍କୁ ସ୍ୱାମିଜୀଙ୍କ ରୂପ ଓ ଭାଷଣ ମନେ ହେଉଥିଲା । ଏହା ଦ୍ୱାରା ବିଶ୍ୱର ଆଧ୍ୟାତ୍ମିକ ବିକାଶ ହେବ ବୋଲି ସେମାନେ ମତ ପ୍ରଦାନ କରୁଥିଲେ ।

ଖବର କାଗଜରୁ ତାଙ୍କ କର୍ମସୂଚୀ ସମ୍ପର୍କରେ ଅବଗତ ହୋଇ ବହୁଦୂରରୁ ଶହ ଶହ ଲୋକ ତାଙ୍କୁ ଦର୍ଶନ ଆଶାରେ ଆସୁଥିଲେ ।

ଯେମାନେ ଦୀକ୍ଷା ନେଇଥିଲେ । ସେମାନଙ୍କ ମଧ୍ୟରେ ଅନେକ ଜର୍ମାନୀର ଅନ୍ୟତମ ବିରାଟ ନଗରୀ କ୍ଲୁନ୍‌କୁ ଆସିବାକୁ ଅନୁରୋଧ କରିଥିଲେ । ସ୍ୱାମିଜୀ ଏକ ସପ୍ତାହ ପରେ ସେଠାକୁ ଯାଇ ଦେଖିଲେ ବହୁଲୋକ ଏକ ଗୃହରେ ଶାନ୍ତ ଭାବରେ ତାଙ୍କ ପାଇଁ ଅପେକ୍ଷା କରିଚନ୍ତି । ସେଠାରେ କ୍ରିୟାଯୋଗ ସମ୍ପର୍କରେ ସ୍ୱାମିଜୀ ଭାଷଣ ଦେଇଥିଲେ । ତାଙ୍କର କାର୍ଯ୍ୟକ୍ରମ ପତ୍ର ପତ୍ରିକାରେ ପ୍ରକାଶ ପାଇଲା । ସେ ସେଠାରେ କେତେକ ସାଧାରଣ ସଭରେ ଭାଷଣ ଦେଇ ଦୁଇ ସପ୍ତାହ ସେଠାରେ ଅବସ୍ଥାନ କରିଥିଲେ । ଅନେକ ବ୍ୟକ୍ତି ଦୀକ୍ଷା ନେଲେ । ଭାରତରେ ଲାହିଡ଼ୀ ବାବା ଓ ଶ୍ରୀଯୁକ୍ତେଶ୍ୱରଜୀ ଯେଉଁ ପ୍ରକ୍ରିୟାରେ କ୍ରିୟା ସାଧନା ଶିକ୍ଷା ଦେଉଥିଲେ, ସେହି କୌଶଳରେ ସେମାନେ ସାଧନା ଶିକ୍ଷା ଲାଭ କଲେ ।

ଚଉଦଦିନ ପରେ ଭାରତ ପ୍ରତ୍ୟାବର୍ତ୍ତନ ପାଇଁ ଶ୍ରୀଯୁକ୍ତେଶ୍ୱରଜୀଙ୍କ ଠାରୁ ସ୍ୱପ୍ନରେ ଏକ ସମ୍ବାଦ ପାଇଲେ । ତିନିଥର ଏହି ସମ୍ବାଦ ପାଇ ଶିଷ୍ୟ ଡ଼ାଗ୍‌ମା ଓ ଫ୍ରିଜ୍‌ଙ୍କ ପରଦିନ ଫେରିଯିବାକୁ କହିଲେ । କାରଣ ପୁରୀ ଆଶ୍ରମରେ କିଛି ଅସୁବିଧା ହୋଇଛି ବୋଲି ସେ ସ୍ୱପ୍ନରେ ସୂଚନା ପାଇଛନ୍ତି । ମି: ଫ୍ରିଜ୍ କହିଲେ ୨୫ ଜୁଲାଇ ପୂର୍ବରୁ ଆପଣ କୌଣସି ସିଟ୍ ପାଇବା ସମ୍ଭବ ନୁହେଁ । ସ୍ୱାମିଜୀ କହିଲେ– ଶ୍ରୀଯୁକ୍ତେଶ୍ୱରଜୀ ଫେରିବାକୁ ସଙ୍କେତ ଦେଉଥିବାରୁ ସେ ନିଶ୍ଚୟ ଫେରିବାର ବନ୍ଦୋବସ୍ତ କରିବେ । ସେ ସେହିଦିନ ଅନୁସନ୍ଧାନ ଅଫିସକୁ କାଉଣ୍ଟରରେ ମହିଳା ଅଫିସରକୁ ପଚାରିବାରୁ ସେ ୨୫ ତାରିଖ ପୂର୍ବରୁ କୌଣସି ସିଟ୍ ନାହିଁ ବୋଲି ସ୍ପଷ୍ଟ ମନା କରିଦେଲେ । ସ୍ୱାମିଜୀ ମହିଳାଙ୍କୁ କହିଲେ ଯେ ମୋର ଗୁରୁ ଶୀଘ୍ର ଫେରିବାକୁ ଚାହୁଁଥିବାରୁ ନିଶ୍ଚୟ ତାଙ୍କୁ ନେବାପାଇଁ କାହାରି ସିଟ୍ ରଦ୍ଦ ହୋଇଥିବ । ମହିଳାଟି ବିରକ୍ତ

ହୋଇ ଭାରତୀୟ ସାଧୁଙ୍କ ସମ୍ପର୍କରେ ପରିହାସ ମୂଳକ ମନ୍ତବ୍ୟ ଦେଲା । ସ୍ୱାମିଜୀ ବାରମ୍ବାର ଅନୁରୋଧ କରିବାରୁ ସେ ଟିକେ ଥଣ୍ଡା ହୋଇ କାନ୍‌ସେଲେସନ୍ ଅଛି କି ନାହିଁ ବୁଝିବାକୁ ଟେଲେକ୍ସ କଲା । ସେ ହଠାତ୍ କହିଲା ସ୍ୱାମିଜୀ ମୋତେ କ୍ଷମା କରନ୍ତୁ, ମୁଁ ଦୁଃଖିତ, ଗୋଟିଏ ସିଟ ଫ୍ରାକ୍‌ପୋର୍ଟ ପର୍ଯ୍ୟନ୍ତ ଖାଲି ଅଛି । ତାପରେ ସ୍ୱାମିଜୀ ପଚାରିଲେ ଫ୍ରାକ୍‌ପୋର୍ଟରୁ ଦିଲ୍ଲୀ ପର୍ଯ୍ୟନ୍ତ ସିଟ ଅଛି କି ? ସେ ସଙ୍ଗେ ସଙ୍ଗେ ଚେଷ୍ଟାକରି ଦେଖିଲା ଯେ ଦୁଇଟି ସିଟ୍ ଫ୍ରାକ୍‌ପୋର୍ଟରୁ ଦିଲ୍ଲୀ ପର୍ଯ୍ୟନ୍ତ ଖାଲି ଅଛି । ତା'ପରେ ସେ ତାର ଚେୟାର ଛାଡି ବାହାରକୁ ଆସିଲା ଏବଂ ସ୍ୱାମିଜୀଙ୍କ ହାତ ଧରି କ୍ଷମା ପ୍ରାର୍ଥନା କଲା ଓ ତା'ର ଅସମ୍ମାନ ଜନକ ମନ୍ତବ୍ୟ ପାଇଁ ଦୁଃଖ ପ୍ରକାଶ କରିଥିଲା ।

ସ୍ୱାମିଜୀ ଉତ୍ତର ଦେଲେ–"ମୋର ମାନନୀୟ ଜନନୀ, ମୁଁ ଆଦୌ ଦୁଃଖିତ ନୁହେଁ । ମୁଁ ଜାଣିଥିଲି, ମୋର ଗୁରୁଦେବ ଯେତେବେଳେ କାନେ କାନେ କହୁଛନ୍ତି ଓ ଯିବାପାଇଁ ବାଧ୍ୟ କରୁଛନ୍ତି, ନିଶ୍ଚୟ ସେ ମୋର ଆଜିର ଯାତ୍ରାପାଇଁ କିଛି ଉପାୟ କରିଥିବେ ।" ସେ ତାଙ୍କର ଟିକେଟ୍ ନେଇ ଭାରତକୁ ସେହିଦିନ ଫେରିବା ପାଇଁ ବ୍ୟବସ୍ଥା କରିଦେଲେ । ସ୍ୱାମିଜୀଙ୍କ ପାଶ୍ଚାତ୍ୟ ଦେଶକୁ ପ୍ରଥମ ଯାତ୍ରାର ବିବରଣରୁ ଜଣାଯାଏ ଯେ ପରମହଂସ ଯୋଗାନନ୍ଦଙ୍କ ପରେ ସ୍ୱାମୀ ହରିହରାନନ୍ଦ ପାଶ୍ଚାତ୍ୟ ଦେଶରେ କ୍ରିୟାଯୋଗ ପ୍ରସାର ପାଇଁ ଏକ ନୂତନ ଯୁଗର ଉନ୍ମୋଚନ କରିଛନ୍ତି । ଏହା ଦ୍ୱାରା ପାଶ୍ଚାତ୍ୟ ଅଧିବାସୀ ଗଣ ଭାରତର ଯଥାର୍ଥ କ୍ରିୟାଯୋଗ କୌଶଳର ଆସ୍ୱାଦନ ଲାଭ କରିବାକୁ ସକ୍ଷମ ହୋଇଛନ୍ତି । ପରମହଂସ ଯୋଗାନନ୍ଦ କ୍ରିୟାଯୋଗ ପାଇଁ ଆଗ୍ରହ ସୃଷ୍ଟି କରିବାରେ ସମଗ୍ର ଜୀବନ ବିତାଇ ଦେଇଥିଲେ । ସ୍ୱାମୀ ହରିହରାନନ୍ଦ ଗୁରୁ ପରମ୍ପରାର

ପ୍ରକୃତ ସାଧନ ତତ୍ତ୍ୱକୁ ପାଶ୍ଚାତ୍ୟ ଦେଶର କ୍ରିୟାବାନ ଶିଷ୍ୟଗଣଙ୍କୁ ପ୍ରଦାନ କରିଯାଇଛନ୍ତି ।

ଏହାପରେ ସ୍ୱାମିଜୀ ପ୍ରତିବର୍ଷ ପ୍ରାୟ ବିଦେଶକୁ ଯିବାପାଇଁ ଆଗ୍ରହୀ ହେଲେ । ବିଦେଶୀ ଶିଷ୍ୟଙ୍କ ଅନୁରୋଧ ଫଳରେ ପୁଣି ୧୯୭୫ ମେ ମାସ ୨୪ ତାରିଖରେ ଦିଲ୍ଲୀରୁ ହଲଣ୍ଡ ଯାତ୍ରା କରିଥିଲେ । ସେଠାରୁ ସେ କାଲିଫର୍ଣ୍ଣିଆ ଯାତ୍ରା କରିଥିଲେ । କାଲିଫର୍ଣ୍ଣିଆରେ ତାଙ୍କର ଶିଷ୍ୟଗଣ ୨୭ ତାରିଖ ମେ ରେ ତାଙ୍କର ଆବିର୍ଭାବ ଉତ୍ସବ ପାଳନ କରିଥିଲେ ଓ ସେଠାରେ ଏକ କ୍ରିୟାଯୋଗ ଆଶ୍ରମ ସ୍ୱାମିଜୀ ଉଦ୍‌ଘାଟନ କରିଥିଲେ । ସେଠାରେ ଏକ କ୍ରିୟାଯୋଗ ପତ୍ରିକା ମଧ୍ୟ ଉଦ୍‌ଘାଟନ କରିଥିଲେ । କାଲିଫର୍ଣ୍ଣିଆରୁ ସେ କୁଇସାଓ, ମିଆମି, ନିଉୟର୍କ ଏବଂ ୱାସିଂଟନ ଡ଼ି. ସି. ପରିଦର୍ଶନରେ ଯାଇଥିଲେ । ସବୁସ୍ଥାନରେ ସ୍ୱାମିଜୀ କ୍ରିୟାଯୋଗ ଧ୍ୟାନ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଆମେରିକାରେ ରେଡ଼ିଓ ଓ ଟେଲିଭିଜନ୍ ପ୍ରୋଗ୍ରାମରେ ତାଙ୍କର ପ୍ରବଚନ ପ୍ରସାରିତ ହୋଇଥିଲା । ଏହା ଶୁଣି ୟୁରୋପ ଓ ଆମେରିକାର ବହୁଲୋକ ତାଙ୍କଠାରୁ ଦୀକ୍ଷା ନେଇଥିଲେ । ଆମେରିକାରୁ ଜର୍ମାନୀ ଆସି ବେଲଜିଅମ୍ ହଲଣ୍ଡ ଓ ଅନ୍ୟାନ୍ୟ ୟୁରୋପୀୟ ଦେଶରେ କ୍ରିୟାଯୋଗ ପ୍ରଚାର କରି ପୁନଷ୍ଚ ଅଗଷ୍ଟ ୮ ତାରିଖରେ ସେ ଭାରତ ଫେରି ଆସିଥିଲେ ।

ପୁଣି ତୃତୀୟ ଥର ସେ ଜୁନ୍ ୨ ତାରିଖ ୧୯୭୭ ରେ ପୁନଷ୍ଚ ଜର୍ମାନ ଯାତ୍ରା କରି ହଲଣ୍ଡ, ବେଲଜିଅମ୍ ଓ ଇଂଲଣ୍ଡ ପଥରେ ନିଉୟର୍କ ଯାଇଥିଲେ । ନିଉୟର୍କରୁ ସେ କୁଇସାଓ ଯାତ୍ରା କରିଥିଲେ । କୁଇସାଓର ଗଭର୍ଣ୍ଣର ସ୍ୱାମିଜୀଙ୍କ ବାଣୀରେ ଆକର୍ଷିତ ହୋଇ ତାଙ୍କ ସହ କ୍ରିୟା–

ଯୋଗ ସମ୍ପର୍କରେ ଆଲୋଚନା କରିଥିଲେ । ବୋଷ୍ଟନ୍‌ରୁ ସ୍ୱାମିଜୀ କାଲିଫର୍ଣ୍ଣିଆ ଯାଇଥିଲେ ଓ ସେଠାରୁ ୱାସିଂଟନ୍ ଡି. ସି.କୁ ଆସିଥିଲେ । ତତ୍‌କାଳୀନ ୟୁ. ଏସ୍. ଏର ପ୍ରେସିଡେଣ୍ଟ ଜିମି କାର୍ଟର ତାଙ୍କ ସହ ସାକ୍ଷାତ ପାଇଁ ମନ ବଳାଇଥିଲେ । ମାତ୍ର କେବଳ ଫୋନ୍‌ରେ କ୍ରିୟାଯୋଗ ସମ୍ପର୍କରେ କଥାବାର୍ତ୍ତା କରିଥିଲେ । ଏହି କାଳରେ ତାଙ୍କର ବିଦେଶରେ ବହୁସ୍ଥାନରେ କେନ୍ଦ୍ର ସ୍ଥାପିତ ହୋଇଥିଲା ଏବଂ ବହୁଲୋକ କ୍ରିୟାଯୋଗରେ ଦୀକ୍ଷିତ ହୋଇଥିଲେ । ବହୁ ସଭା, ରେଡ଼ିଓ ପ୍ରବଚନ, ଟେଲିଭିଜନ କାର୍ଯ୍ୟକ୍ରମରେ ତାଙ୍କୁ ଯୋଗ ଦେବାକୁ ପଡ଼ିଥିଲା । ୟୁ. ଏସ୍. ଏ. ରୁ ସେ ଜର୍ମାନୀ ଫେରିଥିଲେ ଓ ଇଉରୋପୀୟ ଦେଶ ମାନଙ୍କରେ କ୍ରିୟାଯୋଗ ପ୍ରସାର କରିଥିଲେ । ଏହି ବିଦେଶ ଭ୍ରମଣରୁ ଫେରି ସେ ଡ଼ିସେମ୍ବର ୩ ତାରିଖରେ ୧୯୭୭ ସାଲରେ ଦିଲ୍ଲୀରେ ପହଞ୍ଚିଲେ ।

ସ୍ୱାମୀ ହରିହରାନନ୍ଦଙ୍କ ଇଉରୋପ ଓ ଆମେରିକା ଭ୍ରମଣ ଫଳରେ କ୍ରିୟାଯୋଗ ସମ୍ପ୍ରସାରଣରେ ଏକ ନୂତନ ଯୁଗ ସୃଷ୍ଟି ହୋଇଥିଲା । ସେ କ୍ରିୟାଯୋଗ ସାଧନାକୁ ବିଶ୍ୱବ୍ୟାପୀ ସାଧନାରେ ସମ୍ପ୍ରସାରିତ କରିବାକୁ ଚେଷ୍ଟା କରିଛନ୍ତି । କ୍ରିୟାଯୋଗର ମହାନ୍ ପ୍ରବର୍ତ୍ତକ ପରମହଂସ ଯୋଗାନନ୍ଦ ଆମେରିକାରେ ତାଙ୍କ କାର୍ଯ୍ୟକୁ କେନ୍ଦ୍ରୀଭୂତ କରିଥିଲେ । ସ୍ୱାମୀ ହରିହରାନନ୍ଦ ହିଁ ଏହାକୁ ଇଉରୋପରେ ବିଶେଷ ଭାବରେ ପ୍ରସାର କରିଥିଲେ । ପରମହଂସ ଯୋଗାନନ୍ଦଙ୍କ ମହାସମାଧି ପରେ କେବଳ ସ୍ୱାମୀ ହରିହରାନନ୍ଦ ହିଁ ପାଶ୍ଚାତ୍ୟ ଦେଶରେ କ୍ରିୟାଯୋଗ ପ୍ରଭାବ ବିସ୍ତାର କରିବାକୁ ସକ୍ଷମ ହୋଇଥିଲେ । କାରଣ ବୁଝିପାରିଥିଲେ ଯେ ପାଶ୍ଚାତ୍ୟ ଦେଶର ଅଧିବାସୀଗଣ ଭୌତିକ ଉତ୍‌ଥାନ ଲାଭ କରିଥିଲେ ମଧ୍ୟ ଆଧ୍ୟାତ୍ମିକ ଶାନ୍ତିରୁ ବଞ୍ଚିତ । ତେଣୁ ଆଧ୍ୟାତ୍ମିକ ଓ ମାନସିକ

ସ୍ଥୈର୍ଯ୍ୟ ଲାଭ ପାଇଁ ସେମାନେ ଯୋଗ ଉପରେ ବିଶ୍ୱାସ ସ୍ଥାପନ କରିଛନ୍ତି । ତେଣୁ ସେ କ୍ରିୟାଯୋଗ ପ୍ରସାର ଉଦ୍ଦେଶ୍ୟରେ ବିଦେଶ ଯାତ୍ରା ପାଇଁ ସ୍ଥିର କରିଥିଲେ ।

ସ୍ୱାମୀ ହରିହରାନନ୍ଦ ଭାରତରେ କ୍ରିୟାଯୋଗର ଶ୍ରେଷ୍ଠ ପ୍ରତିନିଧି ଭାବରେ ବିଭିନ୍ନ ସ୍ଥାନରେ କ୍ରିୟାଯୋଗ ପ୍ରସାର ପାଇଁ ଅତନ୍ଦ୍ର ସାଧନା କରି ଆସୁଛନ୍ତି । ସେ ଜର୍ମାନ୍, ଇଂଲଣ୍ଡ, ବେଲ୍‌ଜିଅମ୍, ଅଷ୍ଟ୍ରିଆ, ନିଉୟର୍କ, ଓ୍ୱାସିଂଟନ୍, ମେରିଲଣ୍ଡ, ଫ୍ଲୋରିଡ଼ା, କାଲିଫର୍ଣ୍ଣିଆ କାନାଡ଼ା, ଦକ୍ଷିଣ ଆମେରିକାର ବୋଗଟା ଓ କୁରସାଓ ପ୍ରଭୃତି ଅସଂଖ୍ୟ ସ୍ଥାନରେ କ୍ରିୟା-ଯୋଗ ସାଧନା କେନ୍ଦ୍ରମାନ ସ୍ଥାପନ କରି ଭାରତ ବାହାରେ ଏହି ସାଧନା ଧାରାକୁ ସଂପ୍ରସାରିତ କରିଛନ୍ତି । ବିଦେଶ ଭଳି ସମଗ୍ର ଭାରତ ମଧ୍ୟ ତାଙ୍କର ସାଧନା ପଦ୍ଧତି ଦ୍ୱାରା ଆଲୋକିତ ହୋଇଛି । ସମଗ୍ର ଭାରତରେ ବିଭିନ୍ନ ସ୍ଥାନରେ ମଧ୍ୟ ତାଙ୍କ ସାଧନା ପଦ୍ଧତିକୁ ଏବେ ବହୁ କ୍ରିୟାବାନ ସାଧକ ଅନୁସରଣ କରୁଛନ୍ତି । ଓଡ଼ିଶାର ପଲ୍ଲୀରୁ ନଗର ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନ ମଣି ମୁକ୍ତା ଭଳି ବହୁ କ୍ରିୟାବାନ ସାଧକ ଶିଷ୍ୟଙ୍କ ଦ୍ୱାରା ପରିପୂର୍ଣ୍ଣ ହେବାକୁ ଯାଉଛି ।

## କ୍ରିୟାଯୋଗର ଅମୃତମୟ –

ସ୍ୱାମୀ ହରିହରାନନ୍ଦ ପରମହଂସ ଯୋଗାନନ୍ଦଙ୍କ ଭଳି ଯେ କୌଣସି କାଳରେ ଓ ଯେ କୌଣସି ଅବସ୍ଥାରେ ସମାଧିସ୍ଥ ହୋଇ ପାରନ୍ତି । ଏଭଳି ସୌଭାଗ୍ୟମୟ ଦର୍ଶନ ବିଶ୍ୱର ବହୁ କ୍ରିୟାବାନ ଶିଷ୍ୟ ବହୁ ବାର ପ୍ରାପ୍ତ ହୋଇଛନ୍ତି । କେବଳ କ୍ରିୟାବାନ୍ ସାଧକ ମଧ୍ୟରେ ଶକ୍ତିସଂଚାର ଓ ଆଧ୍ୟାତ୍ମିକ ପ୍ରେରଣା ଜାଗରଣ ନିମନ୍ତେ ଏହି ଆଧ୍ୟାତ୍ମିକ ଶକ୍ତି ସେ କ୍ୱଚିତ୍ କରୁଣା କରି ପ୍ରଦର୍ଶନ କରିଥାନ୍ତି । ଏଭଳି ଏକ ମହାପ୍ଲାବନ ଅମର

ଦ୍ୱାରା ଦେଶରେ ହେଉଅଛି । ଅଥଚ ଆତ୍ମଦର୍ଶନ ପାଇଁ ଆଗ୍ରହୀ ସତ୍ୟାନ୍ୱେଷୀ ଜନଗଣ ଏହାର ସଦୁପଯୋଗ କରି ନ ପାରିବା ପରିତାପର ବିଷୟ । ଗୁରୁଦେବଙ୍କ ପ୍ରେରଣା ଦ୍ୱାରା ଲେଖକ ଓ ଅନ୍ୟ ବହୁ କ୍ରିୟାବାନ ଶିଷ୍ୟ ବିଶ୍ୱରେ କ୍ରିୟାଯୋଗ ପ୍ରସାର କରିବା ପାଇଁ ସଙ୍କଳ୍ପ ବଦ୍ଧ ହୋଇଛନ୍ତି ।

କ୍ରିୟାଯୋଗ ଦୀକ୍ଷାକାଳରେ ଶିଷ୍ୟମଧ୍ୟରେ ଭଗବଦ୍ ଶକ୍ତି ସଞ୍ଚାର ପ୍ରତ୍ୟକ୍ଷ ଭାବରେ ଅନୁଭୂତ ହୁଏ ଫଳରେ ସାଧକ ଭାବାତୀତ ଭଗବଦ୍ ଆସ୍ୱାଦନ ଲାଭ କରିଥାଏ । ସ୍ୱାମୀ ହରିହରାନନ୍ଦଙ୍କ ଦୀକ୍ଷାଦାନ ପଦ୍ଧତିର ବିଶେଷତ୍ୱ ହେଉଛି- ସେ ସମଗ୍ର ଶରୀର । ସହସ୍ରାର ଓ ଆଜ୍ଞାଚକ୍ରରେ ଅଲୌକିକ ଭଗବଦ୍ ସ୍ପନ୍ଦନ ସଞ୍ଚାର କରିଦେବା ଫଳରେ ଦୀକ୍ଷା କାଳରେ ଶିଷ୍ୟ ମଧ୍ୟରେ ସୁପ୍ତ ଆତ୍ମଶକ୍ତି ବା କୁଣ୍ଡଳିନୀ ଶକ୍ତିର ଜାଗରଣ ହୋଇଥାଏ । ଗୁରୁଦେବଙ୍କର ବହୁ ଉଚ୍ଚାଙ୍ଗ କ୍ରିୟାବାନ ଶିଷ୍ୟ ମଧ୍ୟ ଏହି ଶକ୍ତି ପ୍ରାପ୍ତ ହୋଇ ଦୀକ୍ଷାଦାନ ଦେବାର ଅଧିକାର ପାଇ ସାରିଛନ୍ତି । ସେମାନେହିଁ ବିଶ୍ୱର କ୍ରିୟାଯୋଗ ଧାରକୁ ସମୃଦ୍ଧ କରିବେ ଏବଂ ମାନବ ଜାତିର ଦ୍ରୁତ ବିବର୍ତ୍ତନ ତଥା ଅଭ୍ୟୁତ୍‌ଥାନ ପାଇଁ ପ୍ରୟାସ କରିବେ । କୁଣ୍ଡଳିନୀ ଶକ୍ତିର ଜାଗରଣ ଫଳରେ ପ୍ରତ୍ୟେକ କ୍ରିୟାବାନ ସାଧକ ମଧ୍ୟରେ ଅଲୌକିକ ଭଗବଦ ଅସ୍ତିତ୍ୱର ସୂଚକ ତିନି ପ୍ରକାର ଦିବ୍ୟ ଅନୁଭବ ପ୍ରତି ମୁହୂର୍ତ୍ତରେ ପ୍ରକାଶ ପାଇଥାଏ । ଏହା ହେଉଛି ଅନ୍ତର୍ଜ୍ୟୋତି, ପ୍ରଣବ ଧ୍ୱନି ଓ ଗଭୀର ଚୁମ୍ବକ ସ୍ପର୍ଶ ଭଳି ସ୍ପନ୍ଦନର ଅଲୌକିକ ଅନୁଭବ । ପଞ୍ଚ ଇନ୍ଦ୍ରିୟର ବିନା ସହଯୋଗରେ ଏହି ଅନୁଭବ ହେଉଥିବାରୁ ଏହାକୁ ଅଲୌକିକ ଓ ଦିବ୍ୟ ଭଗବଦ ଅସ୍ତିତ୍ୱର ସଙ୍କେତ ବୋଲି କୁହାଯାଇ ପାରେ । ଏହା କ୍ରମଶଃ ସମଗ୍ର ଶରୀର ଆଚ୍ଛନ୍ନ କରି ଅନୁଭୂତ ହୁଏ । ସ୍ୱାମୀ ହରିହରାନନ୍ଦ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିବା ପ୍ରତ୍ୟେକ କ୍ରିୟାବାନ ସାଧକ ମଧ୍ୟରେ ଏହି ଅନୁଭୂତି

ଏକ ସାଧାରଣ ବିଷୟ । ସାଧନା ଦ୍ୱାରା ଏହି ଅନୁଭବ ସବୁ ସମୟରେ ରହିବା ଫଳରେ ଭଗବଦ ପ୍ରେମରେ ସାଧକ ବିଭୋର ହୋଇଯାଏ ।

କ୍ରିୟାଯୋଗ ସାଧନା ଫଳରେ ସାଧକ ଦେହବୋଧର ଅତୀତ ତଥା ଭାବାତୀତ ଅବସ୍ଥା ସହଜରେ ଲାଭକରେ । ଏକ ଅନିର୍ବଚନୀୟ ଆନନ୍ଦ ବୋଧ ତାର ଜୀବନ ସତ୍ତାକୁ ଅମୃତମୟ କରିଦିଏ । ଏହାଦ୍ୱାରା ତାର ଜୀବନ ଧାରାରେ ସମ୍ପୂର୍ଣ୍ଣ ଭାବରେ ମୌଳିକ ପରିବର୍ତ୍ତନ ପରିଲକ୍ଷିତ ହୁଏ– ସାଧକର ଦୃଷ୍ଟି ହୁଏ ଅନ୍ତର୍ମୁଖୀ. ଏକ ଗଭୀର ସର୍ବବ୍ୟାପୀ ଅନୁଭବରେ ଜୀବନ ଈଶ୍ୱର ଭାବରେ ସଲୀନ ହୁଏ । ଏହାହିଁ ଯଥାର୍ଥରେ ପାତଞ୍ଜଳ ଦର୍ଶନର କଥିତ ଈଶ୍ୱର ପ୍ରଣିଧାନ ଆସ୍ୱାଦନ– ଏହାହିଁ ପ୍ରକୃତରେ କ୍ରିୟା–ଯୋଗର ଗଭୀର ଫଳଶ୍ରୁତି ପ୍ରାଣକ୍ରିୟାର ଚଞ୍ଚଳତା ସ୍ଥିରରୁ ସ୍ଥିରତର ହେବା ଫଳରେ ବହିର୍ଜଗତ ଓ ଅନ୍ତର୍ଜଗତ ବିକ୍ଷୋଭ ସାଧକକୁ ଆଉ ଅସ୍ଥିର କରିପାରେ ନାହିଁ ।

କ୍ରିୟାବାନ ସାଧକର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ପରିବର୍ତ୍ତନ ପରିଲକ୍ଷିତ ହୁଏ–ସାଂସାରିକ କର୍ମରେ ମଧ୍ୟ ସାଧକର ନୂତନ ସାଫଲ୍ୟ ଆସେ । ଏକ ଅନାସକ୍ତ ଚେତନା ତାକୁ ଆଛନ୍ନ କରିବା ଫଳରେ ଜୀବନ୍ମୁକ୍ତର ଆସ୍ୱାଦନ କ୍ରମଶଃ ସେ ଅନୁଭବ କରେ । ଏହା କ୍ରିୟାଯୋଗର ସାଧନା ପ୍ରାରମ୍ଭର ଅମୃତମୟ ଫଳଶ୍ରୁତି । ଗଭୀରତର ବିଶ୍ୱଚେତନାର ସମୁଦ୍ରରେ ଅବଗାହନ କେବଳ ସାଧନାର ଗଭୀରତା ଓ ଉଚ୍ଚତର କ୍ରିୟା ଉପରେ ନିର୍ଭର କରେ । ତେଣୁ ସଂସାରୀର ଜୀବନରେ ଯେଉଁ ଝଡ, ଝଞ୍ଜା ଓ ବିକ୍ଷୋଭ ବିଭୀଷିକା ଜୀବନକୁ ଶଙ୍କାକୁଳ କରିଥାଏ କ୍ରିୟାଯୋଗ ସେଥିରୁ ଉଦ୍ଧାର ଲାଭ ପାଇଁ ଏକ ନିଶ୍ଚିତ ନୌକା ସଦୃଶ । ଏହା କେବଳ ମାନବର

ଦ୍ରୁତ ବିବର୍ତ୍ତନ ପାଇଁ ପ୍ରଭାବଶାଳୀ ପ୍ରକ୍ରିୟା ନୁହେଁ, ମାନବ ଜାତି ପାଇଁ ଶ୍ରେଷ୍ଠ ସାନ୍ତ୍ୱନା ।

ସ୍ୱାମୀ ହରିହରାନନ୍ଦ ଉଚ୍ଚଶିକ୍ଷିତ ଓ ବହୁଭାଷାରେ ଅଭିଜ୍ଞ । ସେ ବାଇବେଲ, ତରେ, କୋରାନ, ବୌଦ୍ଧଧର୍ମ ଶାସ୍ତ୍ର, ବେଦ, ଉପନିଷଦ, ତନ୍ତ୍ର, ପାତଞ୍ଜଳ ଯୋଗଦର୍ଶନ, ଶଙ୍କର ଦର୍ଶନ, ବ୍ରହ୍ମସୂତ୍ର ତଥା ଭାରତୀୟ ବିବିଧ ସାଧନା, ଧର୍ମ ପରମ୍ପରା ଅଧ୍ୟୟନ କରି ସବୁଧର୍ମର ସାରତତ୍ତ୍ୱକୁ କ୍ରିୟାଯୋଗ ମଧ୍ୟରେ ପରିବେଷଣ କରୁଛନ୍ତି । ଏଥିପାଇଁ ସେ ଭାରତରେ ଓ ଭାରତ ବାହାରେ ବିଶ୍ୱଗୁରୁର ସମ୍ମାନ ଲାଭ କରିଛନ୍ତି । ପୃଥିବୀର ବିଭିନ୍ନ ଦେଶରେ ବିଶେଷ ଭାବରେ ଉଚ୍ଚଶିକ୍ଷିତ ବ୍ୟକ୍ତିଗଣ, ରାଷ୍ଟ୍ରଶାସକ, ମନ୍ତ୍ରୀ, ବିଚାରକ, ଉଚ୍ଚ କର୍ମଚାରୀ ଡାକ୍ତର, ଇଞ୍ଜିନିୟର, ବୈଜ୍ଞାନିକ ଅଧ୍ୟାପକ ଶିକ୍ଷାବିତ୍, ଆଇନଜୀବୀ, କଳାବିତ୍, ସଙ୍ଗୀତଜ୍ଞଠାରୁ ଦରିଦ୍ର କୃଷକ ଜନ ସାଧାରଣ ପର୍ଯ୍ୟନ୍ତ ତାଙ୍କର ସାଧନ ମାର୍ଗ ଅନୁସରଣ କରୁଛନ୍ତି । ପରମହଂସ ଯୋଗାନନ୍ଦଙ୍କ ପରେ କ୍ରିୟାଯୋଗ ସାଧନାକୁ ବିଶ୍ୱବ୍ୟାପୀ ପ୍ଲାବନରେ ପରିଣତ କରିବାରେ ସ୍ୱାମୀ ହରିହରାନନ୍ଦଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ଦୀପରୁ ବହୁଦୀପ ଆଲୋକିତ ହେବା ଭଳି ସ୍ୱାମୀ ହରିହରାନନ୍ଦଙ୍କ କ୍ରିୟାଯୋଗ ସାଧନାର ମହାପ୍ରଦୀପ ଏକ ନୂତନ ଆଧ୍ୟାତ୍ମିକ ଜଗତର ସ୍ୱପ୍ନକୁ ସଫଳ କରିବା ପାଇଁ ପ୍ରଯତ୍ନ କରୁଛନ୍ତି ।

